ଧର୍ମୋ ରକ୍ଷତି ଧାର୍ମିକଂ

ଅନାଥ ଅନ୍ନଦାନ କେନ୍ଦ୍ର ଓ ଦାତବ୍ୟ ଚିକିତ୍ସାଳୟ

ଆସିକା—ଗଞ୍ଜାମ

( Registerd No. 9257/736 of 1975-76 )

ଏହି ଅନ୍ନଦାନ କେନ୍ଦ୍ରର ସାହାଯ୍ୟ ନିମନ୍ତେ ଆୟକର କମିଶନରଙ୍କ **No. A.D.M.** (G. I) 14/80 G/ 76-77/35975-6061 13-1-78 ତାରିଖର ଆଦେଶ ବଳରେ ଆୟକର ମୁକ୍ତ ହୋଇଅଛି ।

ଅନାଥ ଅନ୍ନଦାନ କେନ୍ଦ୍ର ଓ ଦାତବ୍ୟ ଚିକିତ୍ସାଳୟ ପ୍ରକାଶିତ

## ଅଖଣ୍ଡ ଅନ୍ନଦାନ ଯଜ୍ଞର

# ହିତବଚନ

ଦ୍ୱିତୀୟ ସଂସ୍କରଣ

ଏହି ପୁସ୍ତକର ଲବ୍ଧ ଧନ ଅନାଥ ମାନଙ୍କ ସକାଶେ ପରିଚାଳିତ "ଅନ୍ନଦାନ ଯଜ୍ଞ"ର ଆହୁତି ଦାନରେ ବିନିଯୋଗ କରାଯାଉଅଛି ।

ଲେଖକ—ସଭାପତି ଅନାଥ ଅନ୍ନଦାନ କେନ୍ଦ୍ର

ପ୍ରକାଶକ—ପ୍ରଚାର ବିଭାଗ-ଅନାଥ ଅନ୍ନଦାନ କେନ୍ଦ୍ର

— ପ୍ରାପ୍ତି ସ୍ଥାନ —

**ଉତ୍କଳ ଆୟୁର୍ବେଦ ସମବାୟ ଫାର୍ମାସୀ ଲିଃ**

**ଉତ୍କଳ କେମିକେଲ୍ ଔଷଧାଳୟ**

**ଉତ୍କଳ ଆୟୁର୍ବେଦ ମୁଦ୍ରଣାଳୟ**

**ଅନାଥ ଅନ୍ନଦାନ ଔଷଧାଳୟ**

ପୋଷ୍ଟ-ଆସିକା (ଗଞ୍ଜାମ)

ମୂଲ୍ୟ—ପଚିଶ ପଇସା

## ଅନାଥ ଅନ୍ନଦାନ କେନ୍ଦ୍ରର ପରିଚାଳନା କମିଟି ସଦସ୍ୟଗଣ

| | | |
|---|---|---|
| ୧] ପଣ୍ଡିତ କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା | | ସଭାପତି |
| ୨] ଶ୍ରୀ ପି: ଧର୍ମନାରାୟଣ ପାତ୍ର | ଅସିକା | ଉପସଭାପତି |
| ୩] ଶ୍ରୀ କେ:ଭି: ରମଣମୂର୍ତ୍ତି B.A.B.L. | ” | କୋଷାଧ୍ୟକ୍ଷ |
| ୪] ଶ୍ରୀ ଜୋଗପ୍ରସାଦ ସାହୁ | ” | ସେକ୍ରେଟେରୀ |
| ୫] ଶ୍ରୀ ମୁରଳୀ ନାୟକ | ନୂଆଗାଁ | କମିଟି ସଭ୍ୟ |
| ୬] ଶ୍ରୀ ପି. ଲକ୍ଷ୍ମଣମୂର୍ତ୍ତି ପାତ୍ର | ଅସିକା | କମିଟି ସଭ୍ୟ |
| ୭] ଶ୍ରୀ ଟି: ଭିମରାଜ ପାତ୍ର | ” | କମିଟି ସଭ୍ୟ |

## ସହଯୋଗୀ କମିଟି ସଦସ୍ୟ ଗଣ ।

| | | |
|---|---|---|
| ୧] ଶ୍ରୀ ବି. ଜଗନ୍ନାଥ ପାତ୍ର | ଅସିକା | ସଭ୍ୟ |
| ୨] ଶ୍ରୀ ସୁଧାଂଶୁ କୁମାର ପଣ୍ଡା B.A.B.L. | | ସଭ୍ୟ |
| ୩] ଶ୍ରୀ ଏସ୍: ଲକ୍ଷ୍ମୀନାରାୟଣ ମୂର୍ତ୍ତି | ” | ସଭ୍ୟ |
| ୪] ଶ୍ରୀ ପି. ପ୍ରକାଶଂରାଓ ପାତ୍ର | ” | ସଭ୍ୟ |
| ୫] ଶ୍ରୀ ଲକ୍ଷ୍ମୀନାରାୟଣ ଦୋରା | ” | ସଭ୍ୟ |
| ୬] ଶ୍ରୀ ଡ଼: ସାମ୍ବର ପାତ୍ର | ” | ସଭ୍ୟ |
| ୭] ଶ୍ରୀ ଗଣପତି ବେହେରା | ” | ସଭ୍ୟ |
| ୮] ଶ୍ରୀ ଟି. ଶ୍ୟାମବାବୁ ପାତ୍ର | ” | ସଭ୍ୟ |
| ୯] ଶ୍ରୀ ଗଣପତି ଜେନା | ” | ସଭ୍ୟ |
| ୧୦] ଶ୍ରୀ ଗୋପିନାଥ ଜେନା | ” | ସଭ୍ୟ |
| ୧୧] ଶ୍ରୀ ଡ଼: ଶାମ୍ବୁ ପାତ୍ର | ” | ସଭ୍ୟ |
| ୧୨] ଶ୍ରୀ ଲକ୍ଷ୍ମୀନାରାୟଣ ପାଣିଗ୍ରାହି | ” | ସଭ୍ୟ |
| ୧୩] ଡ଼କ୍ଟର ଶ୍ରୀ କାମନା ପଣ୍ଡା | ” | ସଭ୍ୟ |
| ୧୪] ଶ୍ରୀ ଜନାର୍ଦ୍ଦନ ପାତ୍ର | ” | ସଭ୍ୟ |
| ୧୫] ଶ୍ରୀ ତ୍ରିନାଥ ନାୟକ | ” | ସଭ୍ୟ |
| ୧୬] ଶ୍ରୀ ସହଦେବ ନାହାକ | ବାବନପୁର | ସଭ୍ୟ |
| ୧୭] ଶ୍ରୀ ନାରାୟଣମିଶ୍ର, ପ୍ରୋପାଇଟର ସତ୍ୟସାୟୀ-ମେଟଲ୍ ଷ୍ଟୋର୍ ବଲାଙ୍ଗିର | | |
| ୧୮] କବିରାଜ ଶ୍ରୀ ପଦ୍ମନାଭ ଚୌଧୁରୀ ବଲାଙ୍ଗିର | | ସଭ୍ୟ |
| ୧୯] ଶ୍ରୀ ନାରାୟଣ ସାମନ୍ତରା | କୁମାଣ୍ଡି | ସଭ୍ୟ |
| ୨୦] ଶ୍ରୀ କୈବଲ ନାୟକ | ନୂଆଗାଁ | ସଭ୍ୟ |
| ୨୧] ଶ୍ରୀ ରାଧାକୃଷ୍ଣ ପ୍ରଧାନ | ଡାକରଡ଼ା | ସଭ୍ୟ |

# ଉପକ୍ରମଣିକା

ଦାନରେ ଅନ୍ନଦାନ ବ୍ରତରେ ଏକାଦଶୀ
ଭୋଗରେ ରାଜଭୋଗ କଷ୍ଟରେ ପରବାସୀ
ଧନ ଅର୍ଜନେ ଧର୍ମକର, ଧର୍ମେ ପ୍ରୀତ ନରହର ।

ଯୁଗଯୁଗ ଧରି ଏହି ଅମର ବାଣୀର ମହତ୍ତ୍ୱ ସର୍ବଜନ ବିଦିତ । ଯେଉଁମାନେ ଇହଜନ୍ମରେ ଦାନ କରନ୍ତି, ସେମାନଙ୍କର ଭଗବତ ପ୍ରାପ୍ତି ହୋଇ, ପରଜନ୍ମ ସକାଶେ ଏହି ପୁଣ୍ୟର ଫଳ ସଞ୍ଚିତ ହୋଇ ରହିଥାଏ । ଏଣୁ ଆମେ ଅବହେଳିତ, ଅନାଥ, ଅକର୍ମଣ୍ୟ ବ୍ୟକ୍ତିଙ୍କ ସେବନାକରିବା ପ୍ରକୃତ ମନୁଷ୍ୟତର କାର୍ଯ୍ୟ ଅଟେ ।

ରଘୁନାଥ କୀର୍ତ୍ତନ ଉକ୍ତ ଏହି ଆଦର୍ଶ ବାଣୀ ଅକ୍ଷରେ ୨ ସତ୍ୟ ଅଟେ । ଶ୍ରୀମଦ୍ ଭାଗବତ ୧୨/୩/୩୦ ଶ୍ଳୋକରେ ବର୍ଣ୍ଣିତ ଅଛିଯେ—

ଯଦା ମାୟାନୃତଂ ତନ୍ଦ୍ରା ନିଦ୍ରା ହିଂସା ବିଷାଦନଂ
ଶୋକୋ ମୋହୋ ଭୟଂ ଦୈନ୍ୟଂ ସ କଳିଃ ତାମସଃ ସ୍ମୃତଃ ॥

ଅର୍ଥାତ୍ କଳି ଯୁଗରେ କପଟ ମିଥ୍ୟାଭାଷଣ, ଆଳସ୍ୟ, ନିଦ୍ରା, ହିଂସା, ଦୁଃଖ, ଶୋକ, ମୋହ, ଭୟ ଏବଂ ଦୀନତା ସମାଜ ମଧ୍ୟରେ ପୂର୍ଣ୍ଣତା ଲାଭ କରି ଜନଗଣ ମନକୁ କଳୁଷିତ କରୁଅଛି । ଏହି କଳୁଷରୁ ଉଦ୍ଧାର ଲଭିବା ସକାଶେ ଦାନଦେବା ଓ ଧର୍ମ ଆଚରଣ କରିବା ସର୍ବଶ୍ରେଷ୍ଠ ପ୍ରତିକାରଅଟେ । ଏହିକଥା ନୀତିଶାସ୍ତ୍ର ଓ ପୁରାଣାଦିରେ ବର୍ଣ୍ଣନା କରାଯାଇ ଅଛିଯେ—

ଅଷ୍ଟାଦଶ ପୁରାଣେଷୁ ବ୍ୟାସସ୍ୟ ବଚନ ଦ୍ୱୟଂ
ପରୋପକାରଃ ପୁଣ୍ୟାୟ ପାପାୟ ପର ପୀଡନଂ ।

ଅଷ୍ଟାଦଶ ପୁରାଣର ସାରମର୍ମ ହେଉଛି ପରର ଉପକାର ଓ ଦୀନ ଦରିଦ୍ର ଏବଂ ଅନାଥ ମାନଙ୍କର ସେବାକଲେ ପୁଣ୍ୟଲାଭ ହୁଏ । ପରସ୍ୱ ଅପହରଣ, ଦେବତା ଧନରେ ଲୋଭ, ରାଜଦ୍ୱାର, ଶ୍ମଶାନ, ଗୋଚର, ସର୍ବସାଧାରଣର ଉପଯୋଗୀ ଜମି, ଘର

ଓ ପଦାର୍ଥପ୍ରତି ଆସକ୍ତ ରହି, ଯେଉଁମାନେ ଏହି ପରଦ୍ରବ୍ୟ ଓ ପର ଧନକୁ ଅନୁଭୋଗ କରିବାକୁ ଇଚ୍ଛାକରନ୍ତି, ସେମାନଙ୍କୁ ପାପ ଲାଗିଥାଏ ଏବଂ ଏହି ପାପ ପ୍ରବେଶ ଫଳରେ ସୁନାରେ ହାତ ଦେଲେମଧ୍ୟ ପାଉଁଶ ପାଲଟିଯାଏ ।

ଶାସ୍ତ୍ର କହୁଛି –

ନିଭର୍ଗାଙ୍ଗି, ନିଭର୍ମାସୌ, ନିଭର୍ପଙ୍କୌ, ନିଭର୍ଦ୍ଧନେ
ଅତ୍ୟୁତ୍କଟୈ ର୍ପାପପୁଣ୍ୟୈ ରିହୈବ ଫଳମଶ୍ନୁତେ ।

ଏହି ଧର୍ମ ଓ ପାପର ନଗଦ ଫଳ ରୂପେ, ଉପରେ ବସି ଚିତ୍ର ଖାତାରେ ଲିପିରଖୁଛନ୍ତିଯେ, ସେ ଠିକ୍ ସମୟରେ ଯଥାଯଥ ଫଳ ପ୍ରଦାନ କରିଥାଏ । ଏହି ପାପ ଓ ପୁଣ୍ୟ ଅତିଉତ୍କଟ ହେବା ଯୋଗୁ ମନୁଷ୍ୟ ସଙ୍ଗେ ସଙ୍ଗେ ଏହାର ସୁଫଳ ଓ କୁଫଳ ଭୋଗ କରିବା ହଜାର ହଜାର ଘଟଣା ଆମେ ପ୍ରତ୍ୟକ୍ଷରେ ଦେଖୁଅଛେ ।

ଏଣୁ ମନୁଷ୍ୟ ମାତ୍ରକେ ପୂର୍ବୋକ୍ତ ପାପ କର୍ମ ମାନଙ୍କୁ ପରିହାର କରି ଧର୍ମ ଅର୍ଜନ ନିମନ୍ତେ ଚେଷ୍ଟାକଲେ ଧର୍ମ ପ୍ରାପ୍ତି ହୋଇ ଇହଜନ୍ମରେ ସୁଖ ଲଭିବା ସଙ୍ଗେ ସଙ୍ଗେ ଅପର ଜନ୍ମ ନିମନ୍ତେ ଏହି ପୁଣ୍ୟକର୍ମ ରୂପ ଧନ ବେଙ୍କ୍ ଡିପୋଜିଟ୍ ଆକାରରେ ରହିଥାଏ । ଯେତେବେଳେ ତାର ଦରକାର ଚେକ୍ ଦେଇ ଉଠାଇ ଆଣିପାରିବ । ଏହି ଧର୍ମ ଦାନଦ୍ୱାରା ପରୋପକାର ଓ ସତ୍ୟ ଅହିଂସା ଆଚରଣ ଦ୍ୱାରା ମନୁଷ୍ୟକୁ ମିଳିଥାଏ । ଏଣୁ ସବୁ ଦାନ ଠାରୁ ଶ୍ରେଷ୍ଠ ଯେଉଁଦାନ ତାହା ହେଉଛି ଅନ୍ନଦାନ ଏହି ଦାନକୁ "ଦେବଦିଆଇବ ଦେପଦ ଲଭିବ" ନୀତିବାକ୍ୟ ପ୍ରକାରେ ମନଦାନ, ଶ୍ରମଦାନ, ଓ ଧନଦାନ ଦ୍ୱାରା ଯଥାଶକ୍ତି ସାହାଯ୍ୟ କରିବା ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ଅଟେ ।

**ଆନନ୍ଦର କଥା—**

ଏହି ସାଧୁ ଉଦ୍ୟମ ନିମନ୍ତେ ୧୯୫୮ ମକର ସଂକ୍ରମଣ ଦିନ ମୋର ପବିତ୍ର ସହକର୍ମୀ ବନ୍ଧୁ ସ୍ୱର୍ଗତ ଗଙ୍ଗାଧର ପଣ୍ଡା ଆର୍. ଡି. ଡ଼. ଜଗନ୍ନାଥ ରାଓଙ୍କ ସାହାଯ୍ୟରେ କାର୍ଯ୍ୟ ଆରମ୍ଭ

ହୋଇଥିଲେ ମଧ୍ୟ ଭଗବତ କରୁଣାର ଅଭାବରୁ ତାହା ପୋଥି ବାଇଗଣରେ ପରିଣତ ହୋଇ ରହି ଯାଇଥିଲା, ଭ ଗବତ କରୁଣା ଲଭପରେ ୧୯୭୪ ଦଶହରା ଦିନ କାର୍ତ୍ତିକ ମାସଟିପାକ ଅନ୍ନ-ଦାନ ଦେବା ସକାଶେ —

୧) କେ.ଭି. ରମଣମୂର୍ତ୍ତି (୨) ଲକ୍ଷ୍ମୀନାରାୟଣ ହୋତା
୩) ପି.. ଧର୍ମନାରାୟଣ ପାତ୍ର (୪) ପି. ଲକ୍ଷ୍ମଣମୂର୍ତ୍ତି ପାତ୍ର
୫) ଡ଼. ଭାସ୍କର ପାତ୍ର (୬) ଡ. ଖାମ୍ବୁ ପାତ୍ର
୭) ଏସ୍. ସତ୍ୟନାରାୟଣ ମୂର୍ତ୍ତି (୮) ବ. ଜଗନ୍ନାଥ ପାତ୍ର
୯) ଟି. ଖ୍ୱମରାଜୁ ପାତ୍ର (୧୦) ଟି. ଶ୍ୟାମବାବୁ ପାତ୍ର
୧୧) ଶ୍ରୀ ଗୋପିନାଥ ଜେନା (୧୨) ଶ୍ରୀ ଗଣପତି ଜେନା
୧୩) ଶ୍ରୀ ଗଣପତି ବେହେରା ୧୪) ଶ୍ରୀ କୋଟପ୍ରସାଦ ସାହୁ

ପ୍ରଭୃତି ଧର୍ମପ୍ରାଣ ବ୍ୟକ୍ତିମାନେ ବସି ସ୍ଥିରକଲେ, ଦିନକୁ ଜଣେ ଜଣେ ଅନ୍ନଦାନ ଦେବା ଏବଂ ଅବଶିଷ୍ଟ ଶ୍ରମଦାନ ଦ୍ୱାରା ସଂଗ୍ରହ କରିବା ସ୍ଥିର ହୋଇ ଏହା ଦଶହରା ଦିନ ଆରମ୍ଭହୋଇ ପୌର୍ଣ୍ଣମୀ ଦିନ ଉତ୍ତମଖାଦ୍ୟ ପରିବେଷଣ ସହ ଉପରୋକ୍ତ ଦାତା ମାନଙ୍କ ଦ୍ୱାରା ଶୀତବସ୍ତ୍ର ପ୍ରଦାନ ସଙ୍ଗେ ୨ ଏହି ଅନ୍ନଦାନ ଯଜ୍ଞର ପୂର୍ଣ୍ଣାହୁତି କରିବା ବିଚାର କରିବାବେଳେ ଭଗବତ ପ୍ରେରଣା ଆସିଲା, ଦିବ୍ୟଜୀବନ ସଂଘର ଭକ୍ତ ବୃନ୍ଦଙ୍କୁ ଭଗବାନ ପ୍ରେରଣା ଦେଲେ. ଏହାକୁ ଅଖଣ୍ଡ ଅନ୍ନଦାନ ଯଜ୍ଞରେ ପରିଣତ କରିବାକୁ ଉଦ୍ୟମ କର, ତମମାନଙ୍କର ଏ ସାଧୁ କାର୍ଯ୍ୟ ନିଶ୍ଚୟ ଚୀର-ସ୍ଥାୟୀ ହୋଇ ପାରିବ । ଏହି ଆକାଶ ଆଶାବାଣୀରେ ଉଦ୍‌ବୁଦ୍ଧ ହୋଇ ସମବେତ ଧର୍ମପ୍ରାଣ ଦାତାମନେ ଭଗବାନଙ୍କର ଇଚ୍ଛା ଯେଉଁ ପର୍ଯ୍ୟନ୍ତ ସେହି ପର୍ଯ୍ୟନ୍ତ ଏହି ଅନ୍ନଦାନଯଜ୍ଞକୁ ଚାଲୁକରିବା ସିଦ୍ଧାନ୍ତ କଲେ । ତାପରଠାରୁ ପ୍ରତିଦିନ ଏହି ଅନ୍ନଦାନ ଚାଲିଛି । ୧୯୭୪ ଦଶହରା ଦିନ ଆରମ୍ଭ ହୋଇ କାର୍ତ୍ତିକ ପୌର୍ଣ୍ଣମୀ ଦିନ ଶେଷ ହେବାକଥା ନହୋଇ, ଏହି ୧୯୭୭ କାର୍ତ୍ତିକ ପୌର୍ଣ୍ଣମୀ

ଠାରୁ ଅଖଣ୍ଡ ଅନ୍ନଦାନର ସଂକଳ୍ପନେଇ ଚାଲି ଆସୁଛି । ୧୯୭୭ କାର୍ତ୍ତିକ ପୌର୍ଣ୍ଣମୀ ଦିନ ଡୃତୀୟ ବର୍ଷ ଅତିକ୍ରମ କରି ଚତୁର୍ଥ ବର୍ଷରେ ଏହି ଅନ୍ନଦାନ କେନ୍ଦ୍ର ପଦାର୍ପଣ କରି ଚାଲି ଆସୁଛି । ଏହି ଯଜ୍ଞ କିଏ ଚଳାଉଛି ? କିପରି ଚାଲିଛି ? ଏହାର ଆଦି ଓ ଅନ୍ତ ସମ୍ବନ୍ଧେ କୌଣସି କଥା ଜାଣିବାର ବା କହିବାର ଶକ୍ତି ଆମର ନାହିଁ । ଯିଏ କରାଉଛି ସେ କେବଳ ଜାଣନ୍ତି ।

ଆମେ ଗୋଟିଏ ପରିବାରର ୫/୭/୧୦ ଜଣ ବ୍ୟକ୍ତିଙ୍କୁ ମୁଠେଖାଇବାକୁ ଦେବା ସକାଶେ, ସମସ୍ତେ ରୋଜଗାର କରୁଛେ ସମସ୍ତେ ଦିନ ରାତି ଅକ୍ଳାନ୍ତ ପରିଶ୍ରମ କରୁଛେ ତଥାପି ସବୁ-ବେଳେ ଅଭାବ ମଧ୍ୟରେ ଚଳୁଅଛେ । ଏ ଅବସ୍ଥାରେ ପ୍ରତିଦିନ ସକାଳୁ ୭-୧୦ ଘଣ୍ଟା ସମୟ ମଧ୍ୟରେ ଯେତେଜଣ ଯେଉଁଦିନ ଅନ୍ଧ, ଛୋଟା, ଅକର୍ମଣ୍ୟ ଅନାଥ, ଅତିବୁଢ଼ା ଓ ବୁଢ଼ୀ କେନ୍ଦ୍ରକୁ ଆସିବେ ସେମାନଙ୍କୁ ଖାଦ୍ୟ ସକାଶେ ଟିକଟ ଦେଇ ସେମାନଙ୍କୁ ପ୍ରତିଦିନ ୪ ଘଣ୍ଟାରୁ ଖାଇବାକୁ ଖଞ୍ଜାହୋଇ ପାରୁଅଛି, ଏହା କେତେଦୂର କଷ୍ଟସାଧ୍ୟ ସମସ୍ତେ ଅନୁମାନ କରି ପାରୁଥିବେ । ଏହା "ଜଣ ଜଣକେ ଲାଠି ଏକ ଜଣକେ ବୋଝ" ମାତ୍ରରେ ଭଗବାନଙ୍କ କରୁଣାର ଫଳ କେବଳ ଅଟେ ।

ଏଣୁ ଏହି ପବିତ୍ର ଯଜ୍ଞରେ କାୟ,ମନ, ବାକ୍ୟରେ ସମସ୍ତେ ସାହାଯ୍ୟ ସହଯୋଗ ଓ ଆଶୀର୍ବାଦ ଦେଇ ଏହି ଅନ୍ନଦାନଯଜ୍ଞକୁ ଚିରସ୍ଥାୟୀ କରିବାରେ ସମସ୍ତେ ଲାଗିପଡ଼ିବାକୁ ସବିନୟ ନିବେ-ଦନ ଅନାଥ ଅନ୍ନଦାନ କେନ୍ଦ୍ରର ପରିଚାଳନା କମିଟି କରୁଅଛନ୍ତି

ଶୁଭଂଭବତୁ: ଶୁଭଂଭବତୁ: ଶୁଭଂଭବତୁ:

ସର୍ବେ ଭବନ୍ତୁ ସୁଖିନୋ । ସର୍ବେସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମାକଶ୍ଚିତ୍ ଦୁଃଖଭାଗ୍ ଭବେତ୍



ଓଁ ନମୋ ଭଗବତେ ବାସୁଦେବାୟ

## ଅନ୍ନଦାନ ଯଜ୍ଞର ଉଦ୍ଦେଶ୍ୟ

ଦାନରେ ଅନ୍ନଦାନ—ବ୍ରତରେ ଏକାଦଶୀ
ଭୋଗରେ ରାଜଭୋଗ—କଷ୍ଟରେ ପରବାସୀ ।

# ଦାନ ମଧ୍ୟରେ ଅନ୍ନଦାନର ମହତ୍ତ୍ୱ

ଅନ୍ନ କହିଲେ ପ୍ରାଣକୁ ବୁଝାଏ । କାରଣ, ଆମ ଦେହରେ ଯେଉଁ କୋଷ୍ଠାଗ୍ନି ପ୍ରଜ୍ୱଳିତ ହେଉଅଛି, ସେଥିରୁ ଯେଉଁ ରସ, ରକ୍ତ, ମେଦ, ମାଂସ, ଅସ୍ଥି ମଜ୍ଜା ଓ ଶୁକ୍ର ରୂପକ ଧାତୁ ମାନଙ୍କର ଉତ୍ପନ୍ନ ହୋଇଥାଏ । ଏହି ୭ ରସ ରକ୍ତାଦି ଧାତୁମାନେ କେବଳ ଶରୀରକୁ ରକ୍ଷା କରିଥାନ୍ତି । ଏଣୁ ଧାତୁ ମାନେ ଶରୀରର ପ୍ରାଣ ସ୍ୱରୂପ ଅଟନ୍ତି ।

ଏହି ଧାତୁର ପ୍ରାଦୁର୍ଭାବ ଅନ୍ନରୁ ହୋଇଥାଏ । ଏହି ଅନ୍ନ କୋଷ୍ଠାଗ୍ନିରେ ପାଚିତ ହୋଇ ଧାତୁର ଉଦ୍ଭବ ହୁଏ । ଏହି ଧାତୁ ଶରୀରକୁ ରକ୍ଷା କରିଥାଏ, ଏହି ଶରୀରକୁ ରକ୍ଷା କରିବା ସକାଶେ ଆମର ଆଜୀବନ ଏହି ମାୟା, ମମତା, ମୋହ, ସଂଗ୍ରାମ ଚାଲିଛି ।

ଜଣେ ନିଜପାଇଁ, ନିଜ ପରିବାର ପାଇଁ କେବଳ ଧନ ଅର୍ଜୁଛି ଧନ ବ୍ୟୟ କରୁଛି, ଭଲ ଖାଉଛି, ଭଲ ପିନ୍ଧୁଛି । ଏବଂ ତା'ହା ବଳିବ ତାଙ୍କୁ ସଞ୍ଚୟ କରି ପେଡ଼ି ଭର୍ତ୍ତିକରି ରଖି, ଦେଖି ଦେଖି ମରିଯାଉଛି । ଗଲା ବେଳକୁ ଖାଲି ହାତରେ ଆଖିବୁଜି ଚାଲିଯାଉଛି ତ

ଆଉ ଜଣେ, ନିଜପରି ଅନାଥ ଗରିବ, ରୋଗୀ, ବୁଢ଼ା ଓ ବୁଢ଼ୀ (ଅସହାୟ) ମାନଙ୍କୁ ଖାଇବାକୁ, ପିନ୍ଧିବାକୁ ଦେବାକୁ ଆଗ୍ରହୀ ହୋଇ ଦୀନନାଥ ଭାବେ ଦରିଦ୍ର ନାରାୟଣ ସେବା କରିବାକୁ ଇଚ୍ଛା କରୁଛି । ସେ ଭାବୁଛି କୃପଣ ମଣିଷ ଓ ସ୍ୱାର୍ଥପର ନିଜେ ଖାଉଛି, ପିନ୍ଧୁଛି, ନିଜେ ସୁଖରେ ରହୁଛି । ଏଥିରେ ମଧ୍ୟ ତୃପ୍ତି ନହୋଇ, ଅଜସ୍ର ଧନ ସଂଗ୍ରହ କରି, ତାକୁ ପେଡ଼ିରେ ଭରି, ବେଙ୍କରେ ଜମାଦେଇ ବଢ଼ାଇ ୨ ଆନନ୍ଦ ଉପଭୋଗ କରୁଛନ୍ତି ସିନା, ସେହି ଧନର କିଛି ବ୍ୟୟ କରି ମଧ୍ୟ ଦରିଦ୍ର ଅନାଥ, ଜନତାର ମଙ୍ଗଳ ସାଧନ କରିବାକୁ ଚେଷ୍ଟା କରେ ନାହିଁ । ଏହାର କାରଣ କଣ ?

## ଷଡରିପୁ ମନୁଷ୍ୟର ମନୁଷ୍ୟତ୍ୱକୁ ବିନାଶ କରିଥାଏ କିପରି ?

କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ, ଏହି ଛଅଟି ମଣିଷର ଶତ୍ରୁ, ମନୁଷ୍ୟକୁ ଶତ୍ରୁମାନେ ଆକ୍ରମଣ କରି ବିନାଶ ସାଧନ କଲାପରି ଏହି ଦେହକୁ ମଧ୍ୟ, ବିନାଶକରି, ବଳ, ବୀର୍ଯ୍ୟ, କର୍ତ୍ତୃ, ତେଜ, ଧୀରତା, ଭକ୍ତି, ଦୟା, ଧନସେବା ପ୍ରଭୃତି ସଦ୍‌ଗୁଣ ମାନଙ୍କୁ ବିଲୋପ କରିବାକୁ ଏମାନେ ସବୁବେଳେ ସଂଗ୍ରାମ ଚଳାଇଥାନ୍ତି । ମନୁଷ୍ୟଏହି ସଂଗ୍ରାମରେ ବିଜୟୀ ହେବାକୁ ଇଚ୍ଛାକଲେ, ଏହାର ଏକମାତ୍ର ଆୟୁଧ ହେଉଛି ସଂଯମ ଅସ୍ତ୍ର ଅଧିକାରୀ ହୋଇ ତାକୁ ପ୍ରୟୋଗ କଲେ ଶରୀର ବଡଶତ୍ରୁ ମାନେ ହେଉଛନ୍ତି କାମ, କ୍ରୋଧ ଓ ଲୋଭ ଏମାନେ ନିଶ୍ଚିତ ଭାବରେ ପଛଘୁଞ୍ଚା ଦେଇଥାନ୍ତି ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏଣୁ ହେ ମଣିଷ ମାନେ —

ନଜେ ଖାଇଁବା ଓ ସୁଖୀହେବା ପରେ, ପରକାଳର କଥାକୁ ଚିନ୍ତା କରି, ପରକୁ ବଞ୍ଚିବାକୁ ସାହାଯ୍ୟ କର, ପର-ଜନ୍ମକୁ ସୁଖଭୋଗ ଲଭହେବ ତୁମର । ଯେହେତୁ ଆମେ ପୂର୍ବ ଜନ୍ମରେ ଦାନ, ଧର୍ମ, କରିଥିଲେ ବୋଲି ଆଜ ଭୋଗ କରିବାର ଅଧିକାରୀ ହୋଇ ପାରିଛେ । ଯେଉଁମାନେ ଆମର ଆଶ୍ରୟ ପ୍ରାର୍ଥୀ ଏବେ—ସେମାନେ ଗତଜନ୍ମରେ ଆମପରି କୃପଣତା ଆଚରଣ କରିଥିବାରୁ ଓ ପରଶ୍ରୀ ପରସ୍ତ୍ରୀ ଅପହରଣ କରିଥିବାରୁ ସେହି ପାପରଫଳ ଭୋଗ କରୁଅଛନ୍ତି । ଏକଥା ଧର୍ମଶାସ୍ତ୍ର ସମ୍ମତ, ଏଣୁ ଏହାକୁ ଜାଣ, ପାଳନ କରି ।

**ଦେଇଥିଲେ ପାଇ, ବୁଣିଥିଲେ ଦାଇ ।**

କଥାରେଅଛୁ – ଯାହା ଦେଇଥିବ ପେଟକୁ,
ମିଳିଯିବ ତାହା ବାଟକୁ ।

ଯେ ନଦେଉଛନ୍ତି, ସେ ପାଇପାରିବ ନାହିଁ । ଯୋପରି ଯେ ନବୁଣୁଛି ସେ ଦାଇବାକୁ ଯିବାର ଆବଶ୍ୟକ ପଡନଥାଏ । ଏଣୁ ଆମର କ୍ଷୁଧାବାଧା ସମୟକୁ ଅଧଘଣ୍ଟ ଗଡ଼ାଇ ଦେଲେ ଆମର ଅବସ୍ଥା ସେହି ଅଧଘଣ୍ଟା ସକାଶେ କଣ ଯେ ହେଉଛି ଘର ଲୋକଙ୍କ ଉପରେ କେତେ ରାଗ, କେତେ ବିରକ୍ତି, କେତେ ଗାଳୀ ଫଚଡ଼, ବର୍ଷଣ ହେଉଛି । ଏହାତ ସମସ୍ତେ ଅନୁଭବ କରୁଛନ୍ତି ।

ଏହିପରି କ୍ଷୁଧାବାଧା, ଘଣ୍ଟ ଘଣ୍ଟ ଧରି ଓଳି ଓଳି ଦିନ ଦିନ ଧରି ଯେଉଁ ଅନାଥ ଓ ଅକର୍ମଣ୍ୟ ମାନେ ଅନୁଭବ କରୁଛନ୍ତି, ଏଥି ସକାଶେ କେତେଯେ, କଷ୍ଟଭୋଗ କରୁଛନ୍ତି । ଶେଷକୁ ସବୁ ଦିଗରୁ ନିରାଶ ହୋଇ ଆଖିବୁଜି ପଡି ରହିବାକୁ ବାଧ୍ୟ ହୁଅନ୍ତି ।

## ଆହାର ଅଭାବରେ ରୋଗ ଓ କଷ୍ଟ । .

ଆହାରଂ ପଚତି ଶିଖି
ଦୋଷାନାହାର ବର୍ଜିତଃ
ଧାତୁକ୍ଷୟେ ପଚେଦ୍ଧାତୂନ୍
ଧାତୁ୍ୟାଭାବେଽପିଚ ପ୍ରାଣାନ୍

ଅର୍ଥାତ୍ ଶରୀରରକ୍ଷା ସକାଶେ ଓ ନିରୋଗ ପ୍ରାପ୍ତି ଉଦ୍ଦେଶ୍ୟରେ ଆମକୁ ପ୍ରତିଦିନ ନିୟମିତ ସମୟରେ ପରିମିତ ଆହାର ସେବନ କରିବାକୁ ପଡ଼ୁଥାଏ ।

ଆମ ଉଦର ମଧ୍ୟରେ ଯେଉଁ କୋଷ୍ଠାଗ୍ନି ପ୍ରଜ୍ୱଳିତ ହେଉଛି ଏହିଅଗ୍ନିରେ ଯଥାସମୟ ଆହାର ରୂପ ଆହୁତି ପ୍ରଦାନ ନକଲେ ଏହି ଅଗ୍ନି ଆହାର ନପାଇଲେ ଶରୀରସ୍ଥ ଦୋଷ ମାନଙ୍କୁ ଅର୍ଥାତ୍ ପ୍ରକୁପିତ ବାତ, ପିତ୍ତ ଓ କଫ ଏବଂ ଆମ ଦୋଷକୁ ବିନାଶ କରିବା ପରେ ମଧ୍ୟ ଅନ୍ନ ନପାଇଲେ ଶରୀରସ୍ଥ ରସ, ରକ୍ତାଦି ଧାତୁ ବା ବଳ ମାନଙ୍କୁ ଖାଇଦେଇ ମନୁଷ୍ୟକୁ ରୋଗାକ୍ରାନ୍ତ କରିପକାଏ । ଏହେତୁ ଅନାଥ, ଅନ୍ଧ, ଛୋଟା, ଅକର୍ମଣ୍ୟ ଅତିବୁଢ଼ା ବୁଢ଼ୀ ଓ ରୋଗାକ୍ରାନ୍ତ ମାନଙ୍କୁ (ଖାଦ୍ୟ-ଅଭାବ ହେତୁ ରୋଗ ଆକ୍ରମଣ କରି କଷ୍ଟ ପାଉଥିବା ବ୍ୟକ୍ତି-ମାନଙ୍କୁ) ସ୍ୱାସ୍ଥ୍ୟବାନ୍ ରଖିବା ଉଦ୍ଦେଶ୍ୟରେ, ରୋଗ ନହେବାକୁ ଗଣ୍ଡେ ଭୋଜନ ଓ ରୋଗ ଆକ୍ରମଣ କଲେ ଟିକିଏ ଔଷଧ ଦାନ କରିବା ଆମ ସମସ୍ତଙ୍କ କର୍ତ୍ତବ୍ୟ ଅଟେ । ଏହି ପବିତ୍ର ଉଦ୍ଦେଶ୍ୟ ସାଧନ ସକାଶେ ୧୯୫୭ ସମ୍ବତ୍ସରରେ ଆସିକାରେ ଏହି ପବିତ୍ର ସେବା ମୂଳକ ଅନୁଷ୍ଠାନ 'ପ୍ରଜାବନ୍ଧୁ ଆଶ୍ରମ' ପ୍ରତିଷ୍ଠିତ ହୋଇ, ଏଠାରେ—

୧. ଅନାଥ ସେବା ।
୨ ରୋଗୀ ମାନଙ୍କୁ ବିନା ମୂଲ୍ୟରେ ଔଷଧ ବିତରଣ କରିବା ।
୩. ଅଞ୍ଚଳ ବାସୀଙ୍କୁ ଦୈବୀ ଦୁର୍ବିପାକରେ ସାହାଯ୍ୟ କରିବା
ଉଦ୍ଦେଶ୍ୟରେ ଦାତାଗଣଙ୍କ ସାହାଯ୍ୟ ଦାନରେ ଏହି ଆଶ୍ରମ
ର ଉପରୋକ୍ତ ତିନି ଉଦ୍ଦେଶ୍ୟ କାର୍ଯ୍ୟକାରୀ ହେଉଅଛି ।

ଏହାର ପ୍ରଥମ ଉଦ୍ଦେଶ୍ୟ ଅନାଥ ସେବା ସ୍ୱରୂପ ଅନାଥ ଅନ୍ନଦାନ କେନ୍ଦ୍ର ଆପଣଙ୍କ ସାହାଯ୍ୟରେ ପରିଚାଳିତ ହୋଇ ଆଜି ୧୯୭୭ କାର୍ତ୍ତିକ ପୌର୍ଣ୍ଣମୀଦିନ ତୃତୀୟ ବର୍ଷ ଅତିକ୍ରମ କରି ୪ର୍ଥ ବର୍ଷରେ ଚାଲୁଅଛି । ଏଥିରେ ସର୍ବ ସାଧାରଣଙ୍କ କର୍ତ୍ତବ୍ୟ ନିର୍ଭର ରହିଅଛି । ଆଜିକା ଅଞ୍ଚଳ ବାସୀଙ୍କ ଏହି କର୍ତ୍ତବ୍ୟ ପାଳନର ଫଳ ସ୍ୱରୂପ ଆଜି ଏହି ଅନ୍ନଦାନ ଯଜ୍ଞ ଅଖଣ୍ଡିତ ଭାବରେ ୪ର୍ଥ ବର୍ଷରେ ଚାଲି ପାରିବାକୁ ସମର୍ଥ ହୋଇ ପାରିଛି ।

ଦାତାମାନଙ୍କ ମଙ୍ଗଳ ହେଉ—

X ———— X

## ଏହି ପବିତ୍ର ଅନ୍ନଦାନ ଯଜ୍ଞରେ ଆମର କର୍ତ୍ତବ୍ୟ

ଆପଣମାନେ ଜାଣନ୍ତି ଶିଷ୍ଟ, ସେବକ ଓ ମୁନି ଋଷି ମାନେ, ଅତୀତରେ ଓ ଏବେ ମଧ୍ୟ ଜଗତର, ଜନ ସମାଜର ମଙ୍ଗଳ ସାଧନ ସକାଶେ, ଅନ୍ୟାୟ ଓ ଅତ୍ୟାଚାରର ଶାନ୍ତି ନିମିତ୍ତ ଭ୍ରଷ୍ଟାଚାରୀ ମାନଙ୍କର ଶିଷ୍ଟାଚାର ପ୍ରାପ୍ତି ଉଦ୍ଦେଶ୍ୟରେ ଧୃତଯଜ୍ଞ ଗୀତାଯଜ୍ଞ ଓ ନାମଯଜ୍ଞ ମାନ ଅନୁଷ୍ଠିତ କରି ଆସୁଅଛନ୍ତି । ଏହି ଯଜ୍ଞ ମାନଙ୍କୁ ଅନୁଷ୍ଠାନ କରିବାକୁ ସାଧୁ ସନ୍ଥ ମାନଙ୍କୁ ଯେ କେତେ ଶାରୀରିକ କଷ୍ଟ ସହ୍ୟ କରିବାକୁ ପଡ଼ିଥାଏ, ତାହା ସର୍ବଜନ ବିଦିତ କଥା ।

ସେମାନଙ୍କର ସମାଜର ମଙ୍ଗଳ ସକାଶେ ଓ ଦେଶର ଉପକାର ନିମିତ୍ତ ଯେଉଁପରି ହୋମ ଓ ଯଜ୍ଞାଦି ବହିର୍ଯଜ୍ଞର ଆବଶ୍ୟକତା ରହିଛି, ସେହିପରି ଏହି ମାନବ ଶରୀରକୁ ସୁସ୍ଥ ରଖି, ରୋଗମୁକ୍ତ ହେବାକୁ, ଅନ୍ତର୍ଯଜ୍ଞର ଆବଶ୍ୟକତା ନିଶ୍ଚିତ ଭାବେ ରହିଅଛି । ଏହି ମହାନ ଉଦ୍ଦେଶ୍ୟ ସାଧନ ସକାଶେ ଆସିକା ସହରରେ "**ଚିରସ୍ଥାୟୀ ଅନ୍ନଦାନ ଯଜ୍ଞ**" ଅର୍ଥାତ୍ ଅନ୍ତର୍ଯଜ୍ଞ ଆରମ୍ଭ ହୋଇ ଆପଣ ମାନଙ୍କର ସ୍ନେହ, ଶ୍ରଦ୍ଧା, ଶ୍ରମଦାନ, ମନଦାନ, ଓ ଧନଦାନଦ୍ୱାରା କୃଷ୍ଣପୂର୍ବକ ଅତିକ୍ରମକରି, **୧୯୭୭ କାର୍ତ୍ତିକ ପୌର୍ଣ୍ଣମୀ** ଠାରୁ ୪ର୍ଥ ବର୍ଷରେ ପଦାର୍ପଣ କରି ଚାଲିଅଛି । ଏହି ପବିତ୍ର ଅନ୍ତର୍ଯଜ୍ଞ ସମ୍ବନ୍ଧେ ଜ୍ଞାନ ଆହରଣାର୍ଥେ ନିମ୍ନରେ ଏହାର ପରିଚୟ ଦିଆଗଲା ତଦ୍ ଯଥା—

## ଯଜ୍ଞ ବହିର୍ଯଜ୍ଞ ଓ ଅନ୍ତର୍ଯଜ୍ଞର ପରିଚୟ ।

ବହିର୍ଯଜ୍ଞ ଓ ଅନ୍ତର୍ଯଜ୍ଞ ସମ୍ବନ୍ଧେ ଏହି ପୁସ୍ତକ ଆଲୋଚନା କରିବା ପୂର୍ବରୁ ପାଠକ ମାନେ ପ୍ରଥମେ ଯଜ୍ଞର ତାତ୍ପର୍ଯ୍ୟ ସମ୍ବନ୍ଧେ ଜ୍ଞାନଅର୍ଜନ କରିବା ଆବଶ୍ୟକ ।

ଯଜ୍ଞ ଶବ୍ଦର ସରଳାର୍ଥ ହେଉଛି, ଯଜ୍ ଧାତୁରୁ ନିଷ୍ପନ୍ନ ଏହି ଯଜ୍ଞଶବ୍ଦ ଯଜ୍ ଧାତୁର ଅର୍ଥ — ଦେବପୂଜା ଓ ସଙ୍ଗତିକରଣ ଓ ଦାନ ଅର୍ଥାତ୍ ଯେଉଁ ଅନୁଷ୍ଠାନରେ ଅଖିଳ ବ୍ରହ୍ମାଣ୍ଡର ପ୍ରାଣ-ପତି, ଦେବ ଦେବ ପରମେଶ୍ୱରଙ୍କୁ ଓ ତାଙ୍କର ପ୍ରାଣ ଶକ୍ତିର ପ୍ରକାଶ ରୂପ ଏହି ଦୃଶ୍ୟମାନ ଚରାଚର ଜଗତକୁ ନିଃସ୍ୱାର୍ଥ ବୁଦ୍ଧି-ରେ ପୂଜା ବା ସତ୍କାର କରାଯାଏ, ବିଶ୍ୱପ୍ରାଣ ସହିତ, ଆପଣା ପ୍ରାଣର ଅଭିନ୍ନତା ପ୍ରତିଷ୍ଠା କରାଯାଏ । ଏବଂ ଯହିଁରେ

ଜଗତ୍ ପ୍ରାଣରେ ତୃପ୍ତି ନିମନ୍ତେ କାୟ ମନୋବାକ୍ୟରେ ଆପଣାର ସର୍ବସ୍ୱ ଉତ୍ସର୍ଗ କରାଯାଏ, ତାକୁ ଯଜ୍ଞ କୁହାଯାଏ । ଏହି ଜଗତର ସୃଷ୍ଟି ଓ ସ୍ଥିତିର ମୂଳ ହେଉଛି ଯଜ୍ଞ ଏବଂ ଏହି ଯଜ୍ଞହିଁ ବୈଦିକ ଧର୍ମର ପ୍ରାଣଅଟେ ସେହି ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡ ଏକ ବିରାଟ ଯଜ୍ଞାଗାର ଆମମାନଙ୍କର ଅନ୍ତର୍ଗତ ଓ ବାହ୍ୟ ଜଗତ ଯଜ୍ଞମୟ । ସର୍ବ ପ୍ରାଣରୂପୀ ଆତ୍ମଦେବତାର ପୂଜା ଅନ୍ତର ପ୍ରାଣ ସହିତ ବାହ୍ୟପ୍ରାଣର ମିଳନ ଓ ପ୍ରାଣର ପରସ୍ପର ଆଦାନ ପ୍ରଦାନରୁ କର୍ମାନୁଷ୍ଠାନ କେବଳ ଏହି ଜଗତ୍ ଯଜ୍ଞର ସ୍ୱରୂପ ।

ଏହି ବିଶ୍ୱଯଜ୍ଞର ସମସ୍ତ କର୍ତ୍ତା କରୁଣାମୟ ପରମ ପୁରୁଷ ପରଂବ୍ରହ୍ମ ଭଗବାନ୍ ଗୀତାରେ କହି ଅଛନ୍ତି—

ଅହଂକ୍ରତୁରହଂ ଯଜ୍ଞଃ ସ୍ୱଧାହମହମୌଷଧ

ମନ୍ତ୍ରୋହମହ ମେବାଜ୍ୟ ମହମଗ୍ନି ରହଂ ହୁତଂ ।

ଅର୍ଥାତ୍ ହେ ଅର୍ଜ୍ଜୁନ ମୁଁ ଅଗ୍ନ୍ୟର୍ଯ୍ୟଙ୍କ ଓ ବହ୍ନ୍ୟର୍ଯ୍ୟଙ୍କ ସ୍ୱରୂପ ମୁଁ ସ୍ୱଧା ରୂପ ପିତୃଯଜ୍ଞ । ମୁଁ ଯଜ୍ଞର ଆବଶ୍ୟକୀୟ ଔଷଧ । ମୁଁ ମନ୍ତ୍ର, ମୁଁ ହବି, ମୁଁ ଅଗ୍ନି, ଏବଂ ମୁଁ କେବଳ ହବନ କ୍ରିୟା ଅଟେ ।

ଭଗବାନଙ୍କର ଏହି ଉକ୍ତିରୁ ଜଣାଯାଏଯେ, ଆତ୍ମଜ୍ଞାନ ରୂପ ଅଗ୍ନିରେକର୍ମମୟ ଜଗତକୁ ଆହୁତିଦେଇ ଆପଣାର ଅନ୍ତର୍ବାହ୍ୟ ସର୍ବତ୍ର ବ୍ରହ୍ମଭାବ ପ୍ରତିଷ୍ଠା କରି ଆତ୍ମାନନ୍ଦ ପୂର୍ଣ୍ଣକାମ ହେବାହିଁ ଏହି ବ୍ରହ୍ମ ଯଜ୍ଞର ଚରମ ଉଦ୍ଦେଶ୍ୟ । ଏଣୁ ବହ୍ନ୍ୟର୍ଯ୍ୟଙ୍କ ଦ୍ୱାରା ଉକ୍ତ ସକଳ ପ୍ରକାର ଫଳଲବ୍ଧ ହେବାପରି—ଅନାଥ, ବୁଭୁକ୍ଷୁ, ଅରକ୍ଷିତ, ବିକଳାଙ୍ଗ ମାନଙ୍କର ଯେଉଁ କୋଷ୍ଠାଗ୍ନି ନିତ୍ୟ ପ୍ରଜ୍ୱଳିତ ସେଥିରେଆମେ ସମସ୍ତେ ମିଳିତ ଭାବେ ଅନ୍ନଦାନ ଆହୁତି

ପ୍ରଦାନ କରେ, ଜନଦରିଦ୍ର ମାନଙ୍କ ଜୀବନ ରକ୍ଷା କରେ, ସେମା-ନଙ୍କୁ ରୋଗ କବଳରୁ ରକ୍ଷା କରାଇବା ଆମର କର୍ତ୍ତବ୍ୟ ହେବା ନିତାନ୍ତ ପ୍ରୟୋଜନ ।

ଯେହେତୁ—ଶରୀରରେ ପ୍ରଜ୍ୱଳିତ କୋଷ୍ଠାଗ୍ନିର ଶାନ୍ତି ସକାଶେ ଅନ୍ନଦାନ ସ୍ୱରୂପ ଆହୁତିର ପ୍ରୟୋଜନୀୟତା ନିତାନ୍ତ ରହିଅଛି । ଏହି କୋଷ୍ଠାଗ୍ନି ସାଧାରଣତଃ ତିନିଭାଗରେ ବିଭକ୍ତ ଯଥା—

(୧) ଜ୍ଞାନାଗ୍ନି (୨) ଦର୍ଶନାଗ୍ନି (୩) କୋଷ୍ଠାଗ୍ନି

**କୋଷ୍ଠାଗ୍ନି**—ଯେଉଁ ଅଗ୍ନି ଭୁକ୍ତଦ୍ରବ୍ୟ ଅର୍ଥାତ୍ ଚର୍ବ୍ୟ ଚୋବାଇ ଖାଇବାର ଦ୍ରବ୍ୟ ଭାତ ଡାଲି ପ୍ରଭୃତି ଖାଦ୍ୟ ଚୋଷ୍ୟ ଚୋଷି ୨ ଖାଇବା ଦ୍ରବ୍ୟ ଆମ୍ବ, ପିପରମେଣ୍ଟ ପ୍ରଭୃତି ଜାତୀୟ ଖାଦ୍ୟ, ଲେହ୍ୟଖାଦ୍ୟ—ଯାହାକି ଜିଭରେ ଲେହିଁ ୨ ଖାଇବାକୁ ହୁଏ । ପେୟଖାଦ୍ୟ ଅର୍ଥାତ୍ ପାଣି, ସରବତ୍ ପ୍ରଭୃତି ଜାତୀୟ ପାନୀୟଦ୍ରବ୍ୟ ମାନଙ୍କୁ ପରିପାକ କରେ ତାହାରନାମ କୋଷ୍ଠାଗ୍ନି

**ଦର୍ଶନାଗ୍ନି**—ଯେ ଶ୍ୱେତ, ପୀତ, ନୀଳ, ରକ୍ତ ପ୍ରଭୃତି ଦ୍ରବ୍ୟ ମାନଙ୍କୁ ଦର୍ଶନ କରେ ତାହାକୁ ଦର୍ଶନାଗ୍ନି କୁହାଯାଏ ।

**ଜ୍ଞାନାଗ୍ନି**—ଯେ ଧର୍ମ ଓ ଅଧର୍ମ, ଶୁଭ ଓ ଅଶୁଭ, ହିତ ଓ ଅହିତ, ଭଲ ଓ ମନ୍ଦ, ପାପ ଓ ପୁଣ୍ୟ, କରଣୀୟ ଓ ଅକରଣୀୟ ପ୍ରଭୃତିକୁ ଜାଣିପାରେ ତାକୁ ଜ୍ଞାନାଗ୍ନି କୁହାଯାଏ ।

ଏହି ଶରୀର ମଧ୍ୟରେ ଅଗ୍ନିର ସ୍ଥାନ ତିନିଗୋଟି ଯଥା—

(୧) ମୁଖ (୨) ଉଦର (୩) ହୃଦୟ

୧) ମୁଖସ୍ଥ ଅଗ୍ନିକୁ—ଆହବନୀୟ ।
୨) ଉଦରସ୍ଥ ଅଗ୍ନିକୁ – ଗାର୍ହପତ୍ୟ ।
୩) ହୃଦୟସ୍ଥ ଅଗ୍ନିକୁ—ଦକ୍ଷିଣାଗ୍ନି କୁହାଯାଏ ।

ଉପରୋକ୍ତ ଅର୍ଥରେ ଶତସାମ୍ବତ୍ସରିକ ଯଜ୍ଞର ଅନୁଷ୍ଠାନ ଅନୁଷ୍ଠିତ ହୋଇଥାଏ । ଅର୍ଥାତ୍ ମନୁଷ୍ୟ ସୁସ୍ଥ, ସବଳ ଓ ବଳ ବୀର୍ଯ୍ୟବାନ୍ ହେବା ସକାଶେ ଯେଉଁ ଶକ୍ତିର ଆବଶ୍ୟକତା ରହିଛି, ଏହି କୋଷ୍ଠାଗ୍ନିରେ ଆହୁତି ସ୍ୱରୂପ କ୍ଷୁଧା ସମୟରେ ଯେଉଁ ଅନ୍ନ ଭୋଜନ ଦିଆଯାଏ, ସେହି ଅନ୍ନରୁ ଉତ୍ପନ୍ନ ରସ, ରକ୍ତାଦି ଧାତୁମାନେ ଉଦ୍ଭବ ହୋଇ ମନୁଷ୍ୟକୁ ଦୀର୍ଘ ଜୀବନ ପ୍ରଦାନ କରିଥାଏ । ଏହି ଯଜ୍ଞରେ ଆହୁତି ସ୍ୱରୂପ ଅନ୍ନ ଦାନର ଅଭାବ ଘଟିଲେ ଦେହ କ୍ଷୀଣତା ପ୍ରାପ୍ତହୋଇ, ଆୟୁଷର କ୍ଷୟତା ସମ୍ପାଦିତ ହେଉଥିବାରୁ, ମନୁଷ୍ୟ ନାନା ରୋଗ ଭୋଗୀ ଅଳ୍ପାୟୁ ହୋଇଥାନ୍ତି । ଏଣୁ ବହିର୍ଯଜ୍ଞରେ ଘୃତ ଆହୁତିଦେଲେ ମନୁଷ୍ୟର ଯେଉଁ ପୁଣ୍ୟ ଲାଭହୁଏ, ଏହି ଶତସାମ୍ବତ୍ସରିକ ଆୟୁଷଲାଭ ସ୍ୱରୂପ ଅନ୍ନଦାନଅନ୍ତର୍ଯଜ୍ଞରେ ଯେଉଁ ବ୍ୟକ୍ତି ଅନ୍ନ ଆହୁତି ଆନନ୍ଦରେ ପ୍ରଦାନ କରନ୍ତି, ସେହି ଲୋକମାନେ ଘୃତ ଯଜ୍ଞ ଠାରୁ ଏହି ଅନ୍ନଦାନ ଯଜ୍ଞରୁ ଅଧିକ ପୁଣ୍ୟପ୍ରାପ୍ତି ହୋଇଥାନ୍ତି ।

## ଅନ୍ତର୍ଯଜ୍ଞ ଓ ବହିର୍ଯଜ୍ଞର ବିଶ୍ଳେଷଣ

ବର୍ତ୍ତମାନ ଆମେ ଜାଣିବା ଉଚିତ ଯେ, ଯଜ୍ଞ ସହ ଶତସାମ୍ବତ୍ସରିକ ଆୟୁଷ ଲାଭ ଫଳପ୍ରାପ୍ତି ସ୍ୱରୂପ ଅନ୍ନଦାନ ଯଜ୍ଞର ସାମଞ୍ଜସ୍ୟତା କେତେଦୂର ସିଦ୍ଧାନ୍ତ ଅଟେ, ତାହାର ସଂକ୍ଷିପ୍ତ ସୂଚନା ଦିଆଯାଉଛି ।

ନିମ୍ନରେ ବହିର୍ଯଜ୍ଞ ଓ ଅନ୍ତର୍ଯଜ୍ଞର କର୍ତ୍ତା ଓ ଉପାଦାନର ପରିଚୟ ଦିଆଗଲା ।

| ବହିର୍ଯଜ୍ଞର ଉପାଦାନ | ଅନ୍ତର୍ଯଜ୍ଞର ଉପାଦାନ |
|---|---|
| ଯଜମାନ ବା କର୍ତ୍ତା | ଭୂତାତ୍ମା |
| ବ୍ରହ୍ମା | ମନ |

ପଶୁ—କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟାଦି ଷଡ଼ରିପୁ ଅଟନ୍ତି ।

ଯଜ୍ଞପାତ୍ର—ଧୈର୍ଯ୍ୟ, କ୍ଷମା, ସନ୍ତୋଷ ଓ ପଞ୍ଚଜ୍ଞାନେନ୍ଦ୍ରିୟ ।

ଘୃତ—କର୍ମେନ୍ଦ୍ରିୟ ଗଣ ।

କୁଶ - ମସ୍ତକ, କପାଳ ଓ କେଶ ସମୂହ ।

ବେଦି (ଅନ୍ତର୍ବେଦି) – ମୁଖ ।

ଏବଂ ଭୁତ ଯୋ ଯଜ୍ଞ ଶାଳାରେ ପୂର୍ବୋକ୍ତ ତିନ ପ୍ରକାର ଅଗ୍ନି ପ୍ରଜ୍ୱଳିତ ହେଉଅଛି, ଯେଉଁ ଅଗ୍ନିର ଜ୍ୱାଳା ବା ଅର୍ଚ୍ଚି ସାତ ପ୍ରକାରର ଅଟେ । ଏହେତୁ ଅଗ୍ନିକୁ ସପ୍ତାର୍ଚ୍ଚି କୁହାଯାଉଅଛି ।

କ) କୋଷ୍ଠାଗ୍ନିର ସାତ ପ୍ରକାର ଜ୍ୱାଳାରୁ—ରସ ରକ୍ତାଦି ସପ୍ତ ଧାତୁର ଉତ୍ପତ୍ତି ।

ଖ) ଜ୍ଞାନାଗ୍ନିର ସାତ ପ୍ରକାର ଜ୍ୱାଳାରୁ—ଅ, କ, ଚ, ଟ, ତ, ପ, ଆଦି ସାତ ପ୍ରକାର ବର୍ଣ୍ଣ ବର୍ଗର ଉତ୍ପତ୍ତି ।

ଗ) ଦର୍ଶନାଗ୍ନିର ସାତଜ୍ୱାଳାରୁ – ଶ୍ୱେତ, ପୀତ, ନୀଳ ଆଦି ସପ୍ତବର୍ଣ୍ଣର ଉତ୍ପତ୍ତି ହୋଇ ଏହି ପ୍ରପଞ୍ଚ ପ୍ରଚଳିତ । ।।ଇତି।।

(ଅଭିନବ ଧନ୍ୱନ୍ତରୀ)

ଏଣୁ ଏହି ଅନ୍ତର୍ଯଜ୍ଞକୁ ଅନ୍ନଦାନଯଜ୍ଞ କୁହାଯାଏ । ଯେହେତୁ ବହିର୍ଯଜ୍ଞଦ୍ୱାରା ଦେବତାମାନେ ସନ୍ତୁଷ୍ଟ ହେବା ଫଳରେ ଅରିଷ୍ଟ ଖଣ୍ଡନ ହୋଇ ମନୁଷ୍ୟ ସୁଖମୟ ଜୀବନ ଯାପନ କରିବାକୁ ସମର୍ଥବାନ ହୋଇପାରି ଥାଏ ।

ସେହିପରି ଏହି ଅନ୍ନପୂର୍ଣ୍ଣଙ୍କରେ ଅନ୍ନ ଆହୁତି ନଦେଲେ ମନୁଷ୍ୟ ଜୀବନ ଧାରଣ କରି ପାରିବ ନାହିଁ । ଜୀବନ ନଷ୍ଟ ହେଲେ ଏହି କର୍ମମୟ ସଂସାର ଅକର୍ମା ହୋଇଯିବ । ଏଣୁ କଳିକାଳରେ ଓଣ୍ଡ ଥିବା ଜୀବନକୁ ଶାନ୍ତି ପ୍ରଦାନ କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ଅଟେ । ଏହା ଆମର ସମସ୍ତ ବେଦ ଓ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି ।

ପରୋପକାରାୟ ସ୍ୱର୍ଗାୟ
ନର୍କାୟ ପରପୀଡ଼ନେ ।

ନୀତିବାକ୍ୟ ଯଥାର୍ଥ — ଯେଉଁମାନେ ପରକୁ ପୀଡ଼ା ଦେଇ-ଛନ୍ତି, ପର ଦୁଃଖରେ ଦୁଃଖି ନହୋଇ ଗତଜନ୍ମରେ ଅହଂ ଭାବ-ରେ ଜୀବନ ଯାପନ କରିଛନ୍ତି, ସେମାନେ ଆଜ ହାଅନ୍ନ ହାଅନ୍ନ ହୋଇ ବୁଲୁଛନ୍ତି ।

ଯେଉଁମାନେ ଏହି ଅନାଥ, ଅକର୍ମଣ୍ୟ ମାନଙ୍କର ଜଠରସ୍ଥ ଜଠରାଗ୍ନିରେ ଅନ୍ନଦାନ ସ୍ୱରୂପ ଆହୁତି ପ୍ରଦାନ କରିଛନ୍ତି, ଓ ପର ଦୁଃଖରେ ଦୁଃଖୀ ଓ ପର ସୁଖରେ ସୁଖୀ ହୋଇ ସାହାଯ୍ୟ କରନ୍ତି, ସେମାନେ ଆମ ମାନଙ୍କ ପରି ସୁଭୋଗ କରୁଛନ୍ତି ।

ଏହି ପବିତ୍ର ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ସକାଶେ ଆସି କାର ଧର୍ମପ୍ରାଣ ବ୍ୟକ୍ତି ମାନେ ବୋଲନ୍ତେ—

---

୧. ଦିବ୍ୟଜୀବନ ସଂଘର ଭକ୍ତବୃନ୍ଦ ।
୨. ସମବାୟ ସଂସ୍ଥା ମାନଙ୍କର ହୃଦୟବାନ୍ ବ୍ୟକ୍ତିଗଣ ।
୩. ଆସିକା ବଣିକ ସଂଘର ଦୟାଳୁ ସଭ୍ୟମାନେ ।

୪. ଆସିକା ହାଟପଦା ଓ ଜଙ୍ଗଲକୁ ଯିବା ବ୍ୟବସାୟୀମାନେ

୫. ଉତ୍କଳ କେମିକେଲ୍ ଔଷଧାଳୟ କର୍ମକର୍ତ୍ତା ଗଣ ଓ ଉତ୍କଳ ଆୟୁର୍ବେଦିକ୍ ସମବାୟ ଫାର୍ମାସୀର କର୍ମକର୍ତ୍ତା ବୃନ୍ଦ ।

୬. ଆସିକା ସହର ଓ ଆସିକା ତାଲୁକା ଏବଂ ଓଡ଼ିଶାର ପ୍ରତି ସ୍ଥାନରେ କର୍ମରତ ଥିବା ସହୃଦୟ ବଦାନ୍ୟ ବ୍ୟକ୍ତି ମାନଙ୍କର ଦୈନିକଅନ୍ନଦାନ, ଦୈନିକମୁଠା, ଦରବାମୁଠା, ମନଦାନ, ଶ୍ରମଦାନ ଓ ଧନଦାନ ଦ୍ୱାରା –

୭. ସର୍ବୋପରି ଜିଲ୍ଲା କଲେକ୍ଟର, ବି. ଡି ଓ., ତହସିଲ୍ ଦାର ତଥା ଓଡ଼ିଶା ସରକାରଙ୍କ ସାମୟିକ ଧାନ, ମାଣ୍ଡିଆ, ଗହମ ଓ ଲୁଗାଦାନ ଦ୍ୱାରା ଏହି "ଅଖଣ୍ଡ ଅନ୍ନଦାନ ଯଜ୍ଞ" ତୃତୀୟବର୍ଷ ଅତିକ୍ରମ କରି ୧୯୭୭ କାର୍ତ୍ତିକ ପୌର୍ଣ୍ଣମୀ ଠାରୁ ଚତୁର୍ଥ ବର୍ଷରେ ପଦାର୍ପଣକରି, ଅଖଣ୍ଡିତଭାବେ ପରିଚାଳିତ ହୋଇଚାଲିଛି ।

---

## ଅନାଥ ଅନ୍ନଦାନ କେନ୍ଦ୍ରର କାର୍ଯ୍ୟ ପରିଚାଳନା ଦାତବ୍ୟ ଚିକିତ୍ସାଳୟ

ପ୍ରତିଦିନ ପ୍ରାତଃ ୭-୧୦ ଘଣ୍ଟା ଯାଏଁ ଅନ୍ନଦାନ କେନ୍ଦ୍ରକୁ ଯେଉଁ ରୋଗୀ,ଅନାଥ,ଅକର୍ମଣ୍ୟବ୍ୟକ୍ତିମାନେ ଆସୁଛନ୍ତି ସେମାନଙ୍କୁ ଉତ୍କଳ କେମିକେଲ୍ ଔଷଧାଳୟ ଚିକିତ୍ସା କେନ୍ଦ୍ର କବିରାଜ ଭବନରେ ବିନା ମୂଲ୍ୟରେ ଆଉଟ୍‌ଡୋର ଚିକିତ୍ସା ଦିଆଯାଉଅଛି । ଅନ୍ନଦାନ କେନ୍ଦ୍ର ସ୍ୱୟଂସିଦ୍ଧ ହେବା ପରେ ପ୍ରଜାବନ୍ଧୁ ଆଶ୍ରମରେ ଏହି ଦାତବ୍ୟ ଚିକିତ୍ସାଳୟର ସ୍ଥାୟୀ ବ୍ୟବସ୍ଥା ପ୍ରଜାବନ୍ଧୁ ଆଶ୍ରମ ଠାରେ କାର୍ଯ୍ୟକାରୀ ହେବ ।

## —ଅନ୍ନଦାନର ସୁବ୍ୟବସ୍ଥା—

ପ୍ରତିଦିନ ପ୍ରାତଃ ୭—୯ ଘଣ୍ଟା ପର୍ଯ୍ୟନ୍ତ ଅନ୍ନଦାନ ଅଫିସରେ ସମାଗତ ଅନ୍ଧ, ଛୋଟା, ଅକର୍ମଣ୍ୟ ୭୦ ବର୍ଷ ପରର ବୁଢ଼ା ଓ ବୁଢ଼ୀ, ଚିର ରୁଗ୍‌ଣ ଓ ଅନାଥ ମାନଙ୍କୁ ଖାଦ୍ୟ ସକାଶେ ଟିକଟ ଦିଆଯାଏ ।

ଯେଉଁଦିନ ଯେତେ ଅନାଥ ଆସିବେ ସେମାନଙ୍କୁ ଭାତ ଓ ତରକାରୀ ଅପରାହ୍ନ ୪ ଘଣ୍ଟାକୁ ପେଟପୁରା ଖାଇବାକୁ ଦିଆଯାଏ । ବର୍ଷକୁ ୧୨୦ ଦିନ ପର୍ଯ୍ୟନ୍ତ ଦାତା ଦିନକୁ ଜଣେ ୨ ଦାତା ସ୍ୱତଃ ପ୍ରବୃତ୍ତ ହୋଇ, କଏ ବା ବାପାଙ୍କ ଶ୍ରାଦ୍ଧଦିନ ଉଦ୍ଦେଶ୍ୟରେ କଏ ବା ପୁଅ ଝିଅଙ୍କର ଜନ୍ମତିଥି ମାନଙ୍କରେ ତ କଏ ବିଘ୍ନ ବିନାଶନ ଓ ମନକାମନା ପୂରଣ ଉଦ୍ଦେଶ୍ୟରେ ଅନ୍ନଦାନ ଦେଇଥାନ୍ତି ।

ଅବଶିଷ୍ଟ ଦିନ ମାନଙ୍କରେ କେନ୍ଦ୍ର ପାଣ୍ଠିରୁ ଯାହା ଯେଉଁଦିନ ସମ୍ଭବ ଖାଦ୍ୟ ଦିଆଯାଇ ଥାଏ ।

ଭଗବାନଙ୍କ ଅପାର କରୁଣାରୁ ଏହି ଅନ୍ନଦାନ ଯଜ୍ଞ ଅଖଣ୍ଡିତ ଭାବରେ ପରିଚାଳିତ ହୋଇ ପାରୁଛି ।

## ସ୍ଥାୟୀ ସଂସ୍ଥାଗଠନର ସାହାଯ୍ୟ ଦାତାଗଣ

ଏହି ଅଖଣ୍ଡ ଅନ୍ନଦାନ ଯଜ୍ଞ ଓ ଦାତବ୍ୟ ଚିକିତ୍ସାଳୟକୁ ଚୀରସ୍ଥାୟୀ ସଂସ୍ଥାରୂପେ ଗଢ଼ି ତୋଳିବାକୁ ଏପର୍ଯ୍ୟନ୍ତ ଦାତାମାନେ ସ୍ୱେଚ୍ଛା ପ୍ରଣୋଦିତ ଭାବେ ଘର, ବ୍ୟବସାୟ ଓ ନଗଦ ଟଙ୍କା ଆକାରରେ ଯେଉଁ ସାହାଯ୍ୟ କରିଅଛନ୍ତି ସେହି ସଂସ୍ଥା ମାନଙ୍କର ସାହାଯ୍ୟ ଗୁଡିକ ଦେଉଛି ।

୧. ଅନାଥ ଅନ୍ନଦାନ ଔଷଧାଳୟ ବ୍ୟବସାୟ ସଂସ୍ଥା ।
୨. ଅନନ୍ତ ଶିରୋମଣି ପ୍ରେସ୍ ।
୩. ଅନାଥ ଅନ୍ନଦାନ ବସ୍ତ୍ରାଳୟ ।
୪. ଇଣ୍ଡନ୍ ହାଉସ୍ ପରିଚାଳନା ଗୃହ ଓ ବ୍ୟବସାୟ ସଂସ୍ଥା ।
୫. ଅନାଥ ଅନ୍ନଦାନର ସ୍ଥାୟୀ ରନ୍ଧାଘର ଓ ଷ୍ଟୋର ଘର ।
୬. ଅନାଥ ଅନ୍ନଦାନ କେନ୍ଦ୍ରର ଭୋଜନଶାଳା ।
୭. ବିଜୟାନନ୍ଦ କୁଷ୍ଠାଶ୍ରମ ପ୍ରତିଷ୍ଠା ସକାଶେ ଆସିକା ବାଲିପଦର ରୋଡରେ ୪ ମାଇଲ୍ ପଥରେ ନାଲୁଣୀବାଡ଼ୀ ଓ ସିଙ୍ଗନଇ ରୋଡ ଛକଠାରେ ମାଛଗୃଷ ସକାଶେ ଦୁଇ ଏକର ଜମିରେ ବଗିଚା ପୋଖରୀ ଓ କୃଷି କରିବା ସକାଶେ ୪ ଏକର ପଦର ଜମି ମିଳିଅଛି ।
୮. ଏକଲକ୍ଷ ଆଠ ହଜାର ଟଙ୍କା ଯାବଚନ୍ଦ୍ର ଦିବାକର ବେଙ୍କ-ରେ ଜମା ରହି ସେହି ଟଙ୍କାର କଳନ୍ତରରେ ନାନା ଲୋକ ହିତକର କାର୍ଯ୍ୟ ଓ ଅନ୍ନଦାନ କେନ୍ଦ୍ରର ସାହାଯ୍ୟ ସକାଶେ ସ୍ଥାୟୀ ବ୍ୟବସ୍ଥା ସ୍ୱରୂପ ଷ୍ଟେଟ୍ ବେଙ୍କରେ Re-envestment Scheem ରେ ୪୦ ହଜାର ନଗଦ ବନ୍ଧା ଯାଉଛି । ଏହି ୪୦ ହଜାର ଟଙ୍କା ୧୦ ବର୍ଷ ସରିକି ୧,୦୮୦୦୦ ଟଙ୍କା ହେବ ।
୯. ଏହାଦେ ମୋର ମନସ୍କାମନା ସ୍ୱରୂପ ଏହି ଅନ୍ନଦାନ, ଦାତବ୍ୟ ଚିକିତ୍ସାଳୟ ଓ ସମାଜ ମଙ୍ଗଳ କାର୍ଯ୍ୟ କରିବା ଉଦ୍ଦେଶ୍ୟ ଉଦ୍ଦିଷ୍ଟ ଓ ପ୍ରତିଷ୍ଠିତ ପ୍ରଜାଙ୍କୁ ଆଶ୍ରମ ଗୃହର ଉପରେ ଦୋତାଲା ଗୃହ ନିର୍ମାଣ କରିବା ବ୍ୟବସ୍ଥା କରିଯାଉ ଅଛି ଏହି ଯୋଜନାକୁ ଭଗବାନ୍ କାର୍ଯ୍ୟକାରୀ କରିଇଦେଲେ, ସେଥିରେ ବେଙ୍କ୍ ବା ସରକାରୀ ଅଫିସ୍ ରହିବ । ସେଥିରୁ

ମାସକୁ ଏକ ହଜାରରୁ ପନ୍ଦର ଶତଯାଏଁ ଟଙ୍କା ମିଳିବା ଯୋଜନା କାର୍ଯ୍ୟକାରୀ କରାଯାଉ ଅଛି ।

ଏଥି ସକାଶେ ବହୁ ଦାନଶୀଳ ଦାତାମାନେ ମନଦାନ, ଶ୍ରମଦାନ ଓ ଧନଦାନ ଦେଉଅଛନ୍ତି ।

୧୦. ଅନ୍ନଦାନ କେନ୍ଦ୍ରକୁ ସ୍ୱୟଂସିଦ୍ଧ କରିବାକୁ ଗୋଟିଏ ବାସ୍ ଚଳାଇବା ସକାଶେ ବ୍ୟବସ୍ଥା କରାଯାଇଥିଲା, କିନ୍ତୁ ବହୁ ହିତୈଷି ଓ ଦାତା ଏହା ନକରିବାକୁ ପରାମର୍ଶ ଦେବାରୁ ସେହି ଟଙ୍କା ବେଙ୍କରେ ଲଙ୍ଗ୍ ଟର୍ମ୍ ଡିପୋଜିଟ୍ ଜମା ଦିଆଯାଉ ଅଛି ।

**ଅନାଥ ଅନ୍ନଦାନ କେନ୍ଦ୍ର ଓ ଦାତବ୍ୟ ଚିକିତ୍ସାଳୟ ଯେ ୪ର୍ଥ ବର୍ଷରେ ଚାଲିଛି, ଏବଂ ଚିରଦିନ ଚାଲିପାରିବ ଏହା ନିଃସନ୍ଦେହରେ ଆଶା କରାଯାଉଛି**

ଯାହାର ରଖିବେ ଅନନ୍ତ ତାକୁ ଭକତେ ବଳବନ୍ତ

ନୀତି ସାର୍ଥକ ହୋଇ ପାରିଛି, ଭଗବତ୍ ବାଣୀ ସତ । ଜଗତ କରତା ଜଗନ୍ନାଥଙ୍କ ଇଚ୍ଛା ଫଳବତୀ ହେବା ସକାଶେ ଆସିକା ସହରର ଧର୍ମପ୍ରାଣ ତ୍ୟାଗୀ ଯୁବକମାନେ, ବ୍ୟବସାୟୀ ଗୋଷ୍ଠି ଓ ପଞ୍ଚାୟତ ଓ ସର୍ବସାଧାରଣ ବଦାନ୍ୟ ବ୍ୟକ୍ତି ମାନଙ୍କ ସାମୟିକ ସାହାଯ୍ୟ ଏବଂ ପ୍ରତିଦିନ ଶ୍ରମଦାନ ମନଦାନ ଓ ପଦାର୍ଥ ଦାନକରି, ଏହି ଅନୁଷ୍ଠାନ ଚୀରସ୍ଥାୟୀ କରିବାରେ ଅସୀମ ତ୍ୟାଗ କରୁଅଛନ୍ତି । ଏହି ତ୍ୟାଗ ଫଳରେ ପ୍ରତି-ଦିନ ଯୋ ଅନ୍ଧ, ଛୋଟା, ଅକର୍ମଣ୍ୟ ଓ ରୋଗୀ ମାନେ ଯୋ

ଖାଦ୍ୟ ପାଉଛନ୍ତି, ସେହି ସନ୍ତୋଷରେ ଅନ୍ନଦାତା ମାନଙ୍କର ପରୋକ୍ଷମଙ୍ଗଳ ନିଶ୍ଚିତ ଭାବରେ ସାଧିତ ହୋଇଅଛି ।

ଏହି ମଙ୍ଗଳର ଫଳ ସ୍ୱରୂପ ଆମେ ଇହ ଜନ୍ମରେ ସମସ୍ତ ପ୍ରକାର ଆଧି-ବ୍ୟାଧିରୁ ମୁକ୍ତ ପାଇବା ସଙ୍ଗ ୨ ପରଜନ୍ମକୁ ସୁଖ, ଶାନ୍ତି ଓ ଐଶ୍ବର୍ଯ୍ୟ ପାଇଅଛେ । ଏଣୁ କେବଳ ଭାଗ୍ୟବ୍ୟକ୍ତିମାନେ ଶକ୍ତିଥିଲେ ଦାନ କରିବା ନିତାନ୍ତ ଉଚିତ । ଏହି ଦାନ ମଧ୍ୟରୁ ରୋଗ ପ୍ରତିଷେଧକ ଭାବରେ ଅନ୍ନଦାନ ଓ ରୋଗ ପ୍ରତିରୋଧକ ଭାବରେ ଔଷଧ ଦାନ ସର୍ବଶ୍ରେଷ୍ଠ ଦାନ ଅଟେ ।



## ସ୍ୱାସ୍ଥ୍ୟରକ୍ଷାବିଧି

### ସମସ୍ତେ ଜାଣିବା ଓ ପାଳିବା କର୍ତ୍ତବ୍ୟ

ଆମର ସକାଳୁ ଉଠିଯାଏଁ ସବୁ ଛଟପଟ, ଗଣ୍ଡେ ଖାଇବାକୁ ଖଣ୍ଡେ ପିନ୍ଧିବାକୁ ଓ ରୋଗରୁ ମୁକ୍ତି ଲଭିବାକୁ ଔଷଧ ସେବନ କରିବାକୁ ।

ଏଥିମଧ୍ୟରୁ ଖାଦ୍ୟହିଁ ପ୍ରଧାନ, ଯେଉଁ ଲୋକକୁ ନିୟମିତ ପରିମାଣରେ ପରିମିତ ଆହାର ସେବନ କରିବାକୁ ମିଳୁଛି, ସେ ସ୍ୱାସ୍ଥ୍ୟବାନ୍ ରହିଥାଏ । ଅନିୟମିତ ସମୟରେ ଅଯଥା ଖାଦ୍ୟ ସେବନ ବା ଖାଦ୍ୟାଭାବ ରୋଗ ଉତ୍ପନ୍ନର ପ୍ରଧାନ କାରଣ ହୋଇଥାଏ । ଏଣୁ ସବୁଠାରୁ ଅର୍ଥାତ୍ ରୋଗ ହେଲେ ଚିକିତ୍ସା ଦାନ ଲଜ୍ଜା ଓ ଶୀତ ନିବାରଣାର୍ଥେ ବସ୍ତ୍ରଦାନ ଠାରୁ ଅନ୍ନଦାନ ସର୍ବଶ୍ରେଷ୍ଠ । ଯେହେତୁ ଅନ୍ନ ପ୍ରାପ୍ତିରେ

## – ଘଙ୍ଗୁଣୀ ଚିକିତ୍ସା –

ଦୈନନ୍ଦିନ ଘଟୁଥିବା କେତେକ ଖାଦ୍ୟ ଜନିତ ଓ ଦୈଖାଦୁର୍ଘଟଣାରୁ ହଠାତ୍ ପରିତ୍ରାଣ ଲଭିବା ସକାଶେ ନିମ୍ନରେ କେତୋଟି ଦୈବ ବପଉି ଓ ତାହାର ଘଙ୍ଗୁଣୀ ବା ଭୁଟୁକା ଚିକିତ୍ସା ନିମ୍ନରେ ଦିଆଗଲା ।

| ଖାଦ୍ୟ ପଦାର୍ଥର ନାମ— | ଘଙ୍ଗୁଣୀ ପଦାର୍ଥର ନାମ – |
| --- | --- |

୧) ଆଣ୍ଡଭାତ ଖାଇ ଅଜୀର୍ଣ୍ଣ ହେଲେ ଥଣ୍ଡାପାଣି ପିଇ ଉପବାସ ରହିବ ।

୨) ପଣସଖାଇ ଅଜୀର୍ଣ୍ଣହେଲେ ପାଚିଲାକଦଳୀ ଏକଗୋଟି ଖାଇବ

୩) କଦଳୀଖାଇ ଅଜୀର୍ଣ୍ଣ ହେଲେ, ଏକ ଗ୍ରାମର ଗୁଆଘିଅ ଗରମ ଜଳସହ ଖାଇବ ।

୪) ଘିଅ ବା ଘିଅଭଜା ଜିନିଷ ଦ୍ରବ୍ୟ ଅଜୀର୍ଣ୍ଣହେଲେ, ଲେମ୍ବୁରସ ଓ ଗରମଜଳ ପିଇବ ।

୫) ନଡିଆ ବା ତାଳଖାଇ ଅଜୀର୍ଣ୍ଣ ହେଲେ ଗ୍ରାଉଳ ମୁଞ୍ଜିଏ ଚୋବାଇ ଖାଇବ ।

୬. ଆମ୍ବଖାଇ ଅଜୀର୍ଣ୍ଣ ହେଲେ, ଏକକପ୍ କ୍ଷୀର ପିଇବ ।

୭) ଅଧିକ ପାଣିପିଇ ଅଜୀର୍ଣ୍ଣ ହେଲେ, ୧ ତୋଳା ଯୁଆଣି ଗୁଣ୍ଡ ଖାଇବ ।

୮) ଚୁଡ଼ାଖାଇ ଅଜୀର୍ଣ୍ଣହେଲେ, ପିପ୍ପଳୀ ଓ ଯୁଆଣି ୧ ତୋଳା ଗରମ ଜଳସହ ଖାଇବ ।

୯) କାକୁଡ଼ି ଖାଇ ଅଜୀର୍ଣ୍ଣହେଲେ, ମଇଦା ଚୁନାର ରୁଟିଖାଇବ

୧୦) ଗହମ, ଯବ, ଚଣା ଓ ମୁଗ ଖାଇ ଅଜୀର୍ଣ୍ଣ ହେଲେ, ୨ଟି ଦୂଦୁରା (ଶୋଧିତ) ମଞ୍ଜି ଏକକପ୍ ତୋରାଣୀ ପାଣିରେ ବାଟିଖାଇଲେ ଭଲହୁଏ ।

୧୧) ପିଠାଖାଇ ଅଜୀର୍ଣ୍ଣ ହେଲେ, ଥଣ୍ଡାପାଣି ଅଳ୍ପ ୨ ପିଇବ ।

୧୨) ଖେଚୁଡ଼ୀ ଖାଇ ଅଜୀର୍ଣ୍ଣ ହେଲେ, ସୈନ୍ଧବ ଲୁଣ ୧ ଗ୍ରାମ୍ ଗରମ ଜଳସହ ଖାଇବ ।

୧୩) ମିଠାଇ ଖାଇ ଅଜୀର୍ଣ୍ଣ ହେଲେ, ଲବଙ୍ଗ ଚୂର୍ଣ୍ଣ ଏକଗ୍ରାମ୍ ଜଳସହ ଖାଇବ ।

୧୪) ଅଧିକ ମାଛ ଖାଇ ଅଜୀର୍ଣ୍ଣ ହେଲେ, କଞ୍ଚାଆମ୍ବ ଖାଇବ ବା କାଞ୍ଜିପାଣି (ତୋରାଣୀ) ପିଇବ ।

୧୫) ଅଧିକ ମାଂସ ଖାଇ ଅଜୀର୍ଣ୍ଣ ହେଲେ, ଗୁଡ଼ ଆମ୍ବୁଲ କମ୍ବା ଅମୃତଭଣ୍ଡା କ୍ଷୀର ପିଇବ ।

୧୬) ବେଶି ପଖାଳ ଖାଇ ଅଜୀର୍ଣ୍ଣ ହେଲେ, ସୋରିଷ ଚୂର୍ଣ୍ଣ ଏକ ଖାଇବ ।

୧୭) ଦୁଧ ଖାଇ ଅଜୀର୍ଣ୍ଣ ହେଲେ, ତକ୍ର [ଦହି ବା ଘୋଳ] ଖାଇବ ।



## ବିଷ ବିଦ୍ୟାର ହଙ୍ଗୁଣୀ ଚିକିତ୍ସା

ଯେକୌଣସି ଦ୍ରବ୍ୟ ଶରୀର ମଧ୍ୟଗତ ହେବା ପରେ ୨ ସ୍ରୋତ ଓ ରକ୍ତସହ ମିଶି ସ୍ୱାସ୍ଥ୍ୟ ବା ଜୀବନ ହାନି କରିଥାଏ । ଏହି ବିଦ୍ୟାକୁ ବିଷବିଦ୍ୟା କୁହାଯାଏ ।

ଅଥବା ଯେକୌଣସି ପଦାର୍ଥ ଶରୀରସ୍ଥ କ୍ଷତରେ ସଂଲଗ୍ନ ବା ଉଦରସ୍ଥ ହେବା ହେତୁ ସ୍ୱୀୟ ଗୁଣ ପ୍ରଭାବ ଦ୍ୱାରା ପ୍ରାଣ ବା

ସ୍ୱାସ୍ଥ୍ୟ ନାଶ କରିବାକୁ ସମର୍ଥ ହୁଏ । ତାହାକୁ ବିଷ ରୋଗ କୁହାଯାଏ । ଏହାର ଚିକିତ୍ସା ନାନା ପ୍ରକାର । ମାତ୍ର ଏ ଗ୍ରନ୍ଥର ଉଦ୍ଦେଶ୍ୟ ହେଲା ପ୍ରାରମ୍ଭିକ ଚିକିତ୍ସକଙ୍କ ସକାଶେ ପ୍ରାଥମିକ ଚିକିତ୍ସା ସମ୍ବନ୍ଧେ ସାଧାରଣ ଜ୍ଞାନଦେବା । ଏଣୁ ମାତ୍ର ସଦ୍ୟଃ ପ୍ରତିକାର ସ୍ୱରୂପ ସହଜ ଲଭ୍ୟ ବିଷଘ୍ନୌଷଧି ପ୍ରୟୋଗ ଗୁଡ଼ିକରୁ ନିମ୍ନରେ ମାତ୍ର କେତୋଟି ଦିଆଗଲା ।

## ବିଷ ପଦାର୍ଥ ଓ ଘ୍ନୌଷଧି ଚିକିତ୍ସା

| ବିଷ କିମ୍ବା ବିଷର ନାମ— | ଘ୍ନୌଷଧି କିମ୍ବା ଔଷଧର ନାମ— |
|---|---|

୧. ଅଶୋଧିତ ପାରଦ ଖାଇ ବିଷକ୍ରିୟା ଦେଖାଗଲେ ଶୋଧିତ ଅମରଶିଳା ଗନ୍ଧକ ¼ ଗ୍ରାମ ପାନରସ ସହ ବାଟି ଖାଇବ ।

୨. ରସକର୍ପୂର ବିଷ ଘ୍ନୌଷଧିରେ—ଧନିଆଁ ପାଚନ ଓ ଚିନି

୩. ଅଶୁଦ୍ଧ ଗନ୍ଧକ „ —ଗାଇ ଘିଅ ଏକ ଗ୍ରାମତ ଗାଇକ୍ଷୀର ୧ କପ୍ ଏକତ୍ର କରି ପିଇବ ।

୪. ଅଭ୍ର ବିଷଘ୍ନୌଷଧି ଅଁଳାବଟା ଥଣ୍ଡା ପାଣିସହ ଖାଇବ ।

୫. ହିଙ୍ଗୁଳ ବିଷ ଘ୍ନୌଷଧି— ଗୋଲମରିଚ ଗୁଣ୍ଡ ଓ ଘିଅ ।

୬. ମନଃଶିଳା ବିଷରେ—ଗାଇକ୍ଷୀର ଓ ମହୁ ।

୮. ତୁତିଆ ବିଷଘ୍ନୌଷଧି—ଲଆମଣ୍ଡ ଓ ଲେମ୍ବୁରସ ।

୯. ସ୍ୱର୍ଣ୍ଣମାକ୍ଷିକ ବିଷ—ଡାଳିମ୍ବ ଫୁଲକୁ କୋଳଥ ପାଚନ ସହ ବାଟିଖାଇବ ମାତ୍ରା ଦୁଇଗ୍ରାମ ।

୧୦. ଘାରକସ, ନବସାକର ଓ ମୃତ୍ତିକା ବିଷଦୋଷ ରୋଗୀର ଅଜାଣତରେ—ଗଧ ବିଷ୍ଠାକୁ ପାଣିରେ ଗୋଳି ଛାଣି ଥରକୁ ଏକ ଆଉନ୍ସ ଦିନରେ ଦୁଇଥର ସେବ୍ୟ ।

୧୧. ସୁନା ବିଷରେ – ଚିନିସହ ହରଡ଼ା ଚୂର୍ଣ୍ଣ ୩ ଦିନ ସେବ୍ୟ ।
୧୨. ରୁପା ବିଷରେ – ଚିନି ଓ ମହୁ ଯଥେଷ୍ଟ ପରିମାଣରେ ସେବ୍ୟ
୧୩. ତାମ୍ର ବିଷରେ—ଶୁଁଆପାଉ ବା ଧନିଆ ପାଚନରେ ଚିନି ମିଶାଇ ଖାଇବ ।
୧୪. ଶୀଷା ବିଷରେ—ବଚ ଓ ହରିଡ଼ାଚୂର୍ଣ୍ଣ ଚିନିସହ ସେବନୀୟ ।
୧୫. ବଙ୍ଗ ବିଷରେ – କକଡ଼ାଶୃଙ୍ଗୀ ଚୂର୍ଣ୍ଣ ଓ ଚିନି ।
୧୬. ଦାରୁମୂର୍ଷି ବା ଷଙ୍ଖୁଆ ବିଷରେ—କଲିଗାପତ୍ର ରସ ପିଆଇ ଝାଡ଼ା ଓ ବାନ୍ତି କରାଇ ଟାଙ୍ଗଣାଖଇ ୧ ରତି ମହୁସହ ଦେବ
୧୭. ମହୁର ବିଷ ଭଙ୍ଗୁଣୀ – ଅର୍ଜ୍ଜୁନଗଛଛାଲି ଚୂର୍ଣ୍ଣ ମହୁସହ ଦେବ ।
୧୮. ବାଇଡ଼ଙ୍କ ବିଷ ଭଙ୍ଗୁଣୀ – ଗୁଆଘିଅ ଲଗାଇଲେ କୁଣ୍ଡିଆ ଆଦି ନଷ୍ଟହୁଏ ।

**ମଦନିଶା ଭଙ୍ଗୁଣୀ—**

୧୮. ଚିନିସହ ଉପଯୁକ୍ତ ମାତ୍ରାରେ ଗୁଆଘିଅ ଖାଇଲେ ମଦନିଶା ଛୁଟେ । ଗରମ ଚା, ୩/୪ କପ୍ ପିଇବ ।

**ଅପ୍ ବିଷର ଭଙ୍ଗୁଣୀ—**

୨୦. ୧) ମସ୍ତକରେ ଶୀତଳ ଜଳର ଧାରଦେବ ।
୨) ରୋଗୀକୁ ଶୋଇବାକୁ ନଦେଇ, ଦୁଇ ହାତଧରି ଚଲାଇବ ଓ ଗପସପ କରିବ ।
୩) ଅଦାରସ ଚାମଚରେ ୨ କରି ବାରମ୍ବାର ପିଆଇବ ।
୪) ସିଝା ଗାଇଦୁଧ ଓ ଗାଇଘିଅ ମିଶାଇ ୨/୩ ଥର ଦିନରେ ଦେବ ।

୨୧) ଗଞ୍ଜାଇ ବିଷ ସଙ୍କ୍ରାଣୀ—

୧] ସର୍ବ ପ୍ରଥମେ ମୁଣ୍ଡ ଧୋଇବ ।

୨] ରୋଗୀସହ କଥାବାର୍ତ୍ତା କରିବ ନାହିଁ । ଆଉଜୁ ବାଉଜୁ କଥାକୁ ଭୟ କରିବ ନାହିଁ ।

୩] ଶୀତ ଲାଗିବାଯାଏଁ ପୋଛୁପୋଛୁ, ମୁଣ୍ଡ ଧୋଇକରି ପଙ୍ଖା-ତଳେ ଶୁଆଇ ନିଦ୍ରାଯିବା ବ୍ୟବସ୍ଥା କରିବ । ରୋଗୀ ଶୀତ ଅନୁଭବ କଲେ ନିଶା ଛାଡ଼ିଗଲା ବୋଲି ଜାଣିବ ।

୪] ହରଡ଼ା ଗୁଣ୍ଡ କାଞ୍ଜି ପାଣି ସହ ବାଟି ପିଇବ ।

୫] ଗାଈଦହି ତେନ୍ତୁଳିରସ, ଗାଈଘିଅ ଓ ଚିନି ସମପରିମାଣରେ ଏକତ୍ର ମିଶାଇ ୪ ଘଣ୍ଟା ଅନ୍ତରରେ ଖାଇବ ।

୨୨) ଧାତୁରା ବିଷ ସଙ୍କ୍ରାଣୀ –

୧] ଘିଅକୁଆଁରି ରସ ଓ ଚିନି ମିଶାଇ ଖାଇବ ।

୨] କଳାଖଇର ଗୁଣ୍ଡ ୨ ଗ୍ରାମ୍, ଚିନି ୫ ଗ୍ରାମ୍ ଗାଈ କ୍ଷୀରରେ ମିଶାଇ ଖାଇବ ।

୩] ରନ୍ଧା ନଡ଼ିଆ ତେଲ ଦେହରେ ମାଲିସ୍ କରିବ ।

୪] ନଡ଼ିଆ କ୍ଷୀର, ମହୁ ଓ ଚିନି ମିଶାଇ ଖାଇବାକୁ ଦେବ ।

୫] କପୂର୍ପତ୍ର ରସ ପାନ ଓ ମର୍ଦ୍ଦନ କଲେ ମଧ୍ୟ ଧାତୁରାବିଷ ଦୂରହୁଏ ।

୬] ଗିଣି ଓ ନଡ଼ିଆ କଷି ବାଟି ଦେହରେ ଲଗାଇଲେ ମଧ୍ୟ ସଙ୍କ୍ରାଣୀ ହୁଏ ।

୨୩) ଦୁଦୁରା ବିଷ ସଙ୍କ୍ରାଣୀ—

୧] ବାଇଗଣ ମଞ୍ଜି ରସ ଅଧଆଉନ୍ସ ପିଇବାକୁ ଦେବ ।

୨] କପାଫୁଲ ରସ ଅଧ ଆଉନ୍ସ ପିଇବାକୁ ଦେବ ।

୩] ଗାଈକ୍ଷୀର ଓ ଚିନି ମିଶାଇ ୪ ଘଣ୍ଟାଅନ୍ତରରେ ପାନ କରାଇବ ।

୨୪) କନଅର ବିଷ ଘଙ୍ଗୁଣୀ—

୧] ମଇଁଷୀଦହି ବା କ୍ଷୀରରେ ଚନ୍ଦନ ମିଶାଇ ଖାଇଲେ ଭଲହୁଏ ।

୨] ମୁକ୍ତାମଞ୍ଜା ପାଣି ପିଇଲେ ଉପକାର ହୁଏ ।

୨୫) କନକା ବିଷ ଘଙ୍ଗୁଣୀ—

୧] ଧନିଆଁ ପାଚନ ଓ ଚନ୍ଦନ ମହୁସହ ଖାଇବ ।

୨] ଗାଈଚନ୍ଦ୍ରା, ଲେମ୍ବୁ ଓ ଚନ୍ଦନର ସରବତ ପିଇବ ।

୨୬) କରମଞ୍ଜି ବିଷ ଘଙ୍ଗୁଣୀ—

୧] ଗୁଆଘିଅ, ମହୁ ଓ ଚନ୍ଦନ ମିଶାଇ ଖାଇବାକୁ ଦେବ ।

୨] ଜାମକୋଳି ଫଳରସ ଅଥବେ ଗୁଳରସ ବା ପାଚନ ଏକ ତୋଳା ଘିଅ ଓ ମହୁ ମିଶାଇ ଖାଇବାକୁ ଦେବ ।

୨୭) ମହୁମାଛି ବିଷରେ—

୧) ଅପାମାରଙ୍ଗ ପତ୍ର ରସ ବା ଗଞ୍ଜେଇ ପତ୍ର ରସ ବାଟି କ୍ଷତ ସ୍ଥାନରେ ଲଗାଇଲେ ବା କରମଞ୍ଜି ପାଣିରେ ବାଟି ଲଗାଇଲେ ମହୁମାଛି ପ୍ରଭୃତିର ଯନ୍ତ୍ରଣା ଉପଶମ ହୋଇଥାଏ ।

୨୮) ବିମ୍ବିର ବିଷରେ—

୧] ପ୍ରଥମେ ମାରିବା ସ୍ଥାନକୁ ଦେଖି ଶୁଙ୍କିଥିଲେ ବାହାର କରି ଚନ୍ଦନ ଓ ଗୋବର ଏକତ୍ର କରି ଲଗାଇବ ।

୨] ସୁରକ୍ଷାର ଓ ଗୁଡ ଏକତ୍ର ମିଶାଇ ଲଗାଇବ ।

୩] ରସୁଣ ବା ପିଆଜ ବାଟି ଲଗାଇବ ।

୨୯) ଝିଟିପିଟି ବିଷରେ—

ଶ୍ୱେତଅରଖ ମୂଳର ପାଚନରେ, କ୍ଷତ ସ୍ଥାନ ଧୋଇ କାଣ୍ଡୀ ଲେଉଟିଆ ମୂଳକୁ ବାଟି ଲେପଦେବ ।

# ଅନାଥ ଅନ୍ନଦାନ କେନ୍ଦ୍ର ପରିଚାଳିତ
# ଅନାଥ ଦାତବ୍ୟ ଚିକିତ୍ସାଳୟ

## ପ୍ରଜାବନ୍ଧୁ ଆଶ୍ରମ—ଆସିକା

ଏଠାରେ ଗରିବ, ଅନାଥ ଓ ଅସହାୟ ବ୍ୟକ୍ତି ମାନଙ୍କୁ ବିନା ମୂଲ୍ୟରେ ଆୟୁର୍ବେଦ୍ ଦ୍ୱାରା ଚିକିତ୍ସା କରାଯାଏ । ଏହି ଦାତବ୍ୟ ଚିକିତ୍ସାଳୟ ସକାଶେ ଜାଙ୍ଗସନ୍ ରେ ଥିବା ଅନାଥ ଅନ୍ନଦାନ ଔଷଧାଳୟର ସମସ୍ତ ସମ୍ପତ୍ତି ଦାନ ସୂତ୍ରରେ ମିଳିଅଛି । ସେଥିରୁ ବର୍ଷକୁ ପ୍ରାୟ ୧୦,୦୦୦ (ଦଶହଜାର) ଟଙ୍କା ମିଳୁଅଛି, କିନ୍ତୁ ଅନ୍ନଦାନ କେନ୍ଦ୍ର ସ୍ୱୟଂନିର୍ଭର ହୋଇପାରି ନଥିବାରୁ "ଦାତବ୍ୟ ଆୟୁର୍ବେଦ ଔଷଧାଳୟ" ପାଣ୍ଠି ଅନ୍ନଦାନରେ ବ୍ୟୟ ହେଉ-ଅଛି । ଅନ୍ନଦାନ ସ୍ୱୟଂନିର୍ଭର ହେବାପରେ ପ୍ରଜାବନ୍ଧୁ ଆଶ୍ରମରେ "ଦାତବ୍ୟ ଚିକିତ୍ସାଳୟ" ଖୋଲାଯିବ । ସେଯାବତ୍ ଏହି ଦାତବ୍ୟ ଔଷଧାଳୟର କାର୍ଯ୍ୟ ଝମ୍ପେଶ୍ୱରୀ ପାଠଶାଳ୍ପିତ କବିରାଜ-ଭବନରେ ଉତ୍କଳ କେମିକେଲ୍ ଔଷଧାଳୟର ଔଷଧ ଦାନ ଦ୍ୱାରା ପରିଚାଳିତ ହେବ ।

## ସର୍ବସାଧାରଣଙ୍କୁ ନିବେଦନ—

ଯେଉଁଠାରେ ଗରିବ, ଅନାଥ, ଅସହାୟ, ବ୍ୟକ୍ତି ମାନେ ଅର୍ଥାଭାବରୁ ଚିକିତ୍ସା ନପାଇ ଯନ୍ତ୍ରଣା ଭୋଗୁ ଅଛନ୍ତି, ସେମାନଙ୍କୁ କେନ୍ଦ୍ରରେ ଆଣି ପହଞ୍ଚାଇଦେଲେ, କେନ୍ଦ୍ର ତାହାର ସମସ୍ତ ଦାୟୀତ୍ୱ ତୁଲାଇନେବ । ॥ଇତି॥

## ସହୃଦୟ ଧର୍ମପ୍ରାଣ ଦାତାଗଣ

ଆସିକାରେ ଅନାଥ ଅନ୍ନଦାନ କେନ୍ଦ୍ର ପକ୍ଷରୁ ଅନୁଷ୍ଠିତ ଏହି "ଅଖଣ୍ଡ ଅନ୍ନଦାନ ସଙ୍ଗରେ" ଆପଣ ଦାନ କରିବା ସକାଶେ ଦିନରେ ଅଧଘଣ୍ଟା ମନ ଓ ଶ୍ରମଦାନ କରନ୍ତୁ, ଏବଂ ଦୈନନ୍ଦିନ ଖର୍ଚ୍ଚ ମଧ୍ୟରୁ କାଟି ରଖି ଦଶପଇସା [ଗୋଟିଏ ପାନ ଖିଲର ଦାମ୍] ଗୋଟିଏ କାଗଜ ମୁଣାରେ ରଖି ଏହି ପଇସା ଏବଂ ମନ ଦାନ ଓ ଶ୍ରମଦାନରୁ ଯାହା ପଇସା ମିଳିବ ସେହି ପଇସାରେ ମିଶାଇ, ପ୍ରତି ମାସରେ ୫/୧୦ ଯାହାସମ୍ଭବ ପଠାଇ ଏହି ଅନ୍ନଦାନକୁ ସ୍ଥାୟୀ କରିବାରେ ସାହାଯ୍ୟ କରନ୍ତୁ ।

ପଣ୍ଡିତ କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା
ସଭାପତି—ଅନାଥ ଅନ୍ନଦାନ କେନ୍ଦ୍ର ଓ ଦାତବ୍ୟ ଚିକିତ୍ସାଳୟ
ପୋ—ଆସିକା [ଗଞ୍ଜାମ]

**❋ ସମାପ୍ତ ❋**



ବିନା ମୂଲ୍ୟରେ ଦିଆଯାଉଅଛି

# ମହା ନାରାୟଣ ତୈଳ
# ଓ
# ବାଳାନନ୍ଦ କସ୍ତୁରୀ ମାତ୍ରା

ଏହି ମହା ନାରାୟଣ ତୈଳର ପାକ କାର୍ଯ୍ୟ ସକାଶେ ଦୁଇବର୍ଷ କାଳ ଲାଗିଲା, ୫୦ ହଜାର ଟଙ୍କା ବ୍ୟୟହେଲା । ସର୍ବସାଧାରଣ, ଗରିବ, ଅନାଥ, ଅସହାୟ ଲୋକମାନେ, ପୂର୍ବେ ରାଜା ମହାରାଜା ମାନେ ଥିଲେ, ସେମାନେ ଏହି ତୈଳ ପ୍ରସ୍ତୁତ କରି ସର୍ବସାଧାରଣଙ୍କୁ ଯୋଗାଉଥିଲେ ରାଜା ମହାରାଜା ମାନେ ଚାଲିଯିବା ପରେ ଏହି ସ୍ଥାନ ଖାଲି ପଡ଼ିଥିଲା । ଉତ୍କଳ କେମିକେଲ୍ ଔଷଧାଳୟ ଏହି ଅଭାବ ପୂରଣ କରି ଏହି ମହା ନାରାୟଣ ତୈଳକୁ ବିନା ମୂଲ୍ୟରେ ବିତରଣ କରିବା ସକାଶେ ବ୍ୟବସ୍ଥା କରି ଅଛନ୍ତି ।

ପ୍ରାତଃ ଘ ୭—୯ ଣ୍ଟା ପର୍ଯ୍ୟନ୍ତ ଉତ୍କଳ କେମିକେଲ୍ ଫାକ୍ଟେରୀ ଠାରେ ବିତରଣ କରୁଅଛନ୍ତି ।

ଗୋଟିଏ ଓପାରିଆ ମୁହଁ ସାନକାଚ ୧୧ ଟା ଲିଆ ଧରିବାପରି କାଚ ବା ଫରୁଆଟିଏ ଧରି ଆସିଲେ ସେମାନଙ୍କୁ ଲିଆରେ ବୁଡ଼ାଇ ୧୧ ଦିନ ସକାଶେ ଏହି ମହାନାରାୟଣ ତୈଳ ଦିଆଯିବ ।

ଶିଶୁ ମାନଙ୍କର ସକଳ ରୋଗ ବିନାଶ ସକାଶେ
"ବାଳାନନ୍ଦ କସ୍ତୁରୀ ମାତ୍ରା"
ମଧ୍ୟ ବିନା ମୂଲ୍ୟରେ ଦିଆଯାଉଅଛି ।

—ପରୀକ୍ଷା ପ୍ରାର୍ଥନୀୟ—

ସ୍ଥାନ—ଉତ୍କଳ କେମିକେଲ୍ ଔଷଧାଳୟ
ସମୟ—ପ୍ରାତଃ ଘ: ୭—୯ ଣ୍ଟା ।

ବି. ଦ୍ର:—ଅନାଥ, ଅସହାୟ ଓ ଗରିବଙ୍କ ସକଳ ପ୍ରକାର ରୋଗର ଆଉଟ୍ ଡୋର ଚିକିତ୍ସା ସକାଶେ କବିରାଜ ଭବନରେ ପ୍ରାତଃ ୯—୧୨ ଘଣ୍ଟା ପର୍ଯ୍ୟନ୍ତ ଔଷଧ ବିତରଣ କରାଯାଇ ଥାଏ ।

# ଅନାଥ ଅନ୍ନଦାନ ବସ୍ତ୍ରାଳୟ

## ଉତ୍କଳ କେମିକେଲ୍ ବିଲ୍ଡିଂ—ଆସିକା

—ଚିଫ୍ ଏଜେନ୍‌ସି—

ଭାରତ ସରକାରଙ୍କ ମଞ୍ଜୁରୀ ପ୍ରାପ୍ତ

ନେସ୍‌ନାଲ୍ ଟେକ୍‌ଷ୍ଟାଇଲ୍ କର୍ପୋରେସନ୍

**ଭୁବନେଶ୍ୱର**

ଏହି ବସ୍ତ୍ରାଳୟରେ N.T.C. ର ସମସ୍ତ ପ୍ରକାର ଟେରିଲିନ୍, ଟେରିକଟ୍, ପଲିଷ୍ଟାର, ଵୋଏଲ୍ ଓ ଜିନ୍ ପ୍ରଭୃତି କନା ଓ ବେଡ୍‌ସିଟ୍, ଧୋତି, ଚଦର, ଶାଢ଼ୀ, ସୁଲଭ ମୂଲ୍ୟରେ ବିକ୍ରୟ ହୁଏ। N.T.C. ଦ୍ୱାରା ସ୍ୱତନ୍ତ୍ର ଅନୁମତିଲବ୍ଧ ସମସ୍ତ ପ୍ରକାର ସମ୍ବଲପୁର, ପିପିଲି, କଟକ, ଭୁବନେଶ୍ୱର, ବିଖ୍ୟାତ ମଣିଆବନ୍ଧ ଓ ସମ୍ବଲପୁରୀ ଶାଢ଼ୀ, ପାଣି ଗାମୁଛା, ଯଥା ଖୋର୍ଦ୍ଧା ଲୁଙ୍ଗୀ, ଗାମୁଛା ପ୍ରଭୃତି ବିକ୍ରୟ କରାଯାଉଅଛି।

ବି.ଦ୍ର.—ଆପଣଙ୍କ ଆବଶ୍ୟକୀୟ ବସ୍ତ୍ର କେଉଁଠାରୁ ହେଲେବି କିଣିବେ। ଅନ୍ନଦାନ ବସ୍ତ୍ରାଳୟରୁ କିଣିଲେ, ସୁବିଧା ଦରରେ ଜିନିଷ ପାଇବା ସଙ୍ଗେ ୨ ଏହି ଲୁଗାରୁ ଯାହା ଲାଭ ମିଳିବ ତାହା **ଅନାଥ ଅନ୍ନଦାନରେ** ଲାଗିବ। ଏଣୁ ଆପଣ ମାନେ ଏଠାରୁ ଲୁଗା କିଣିବାକୁ ମୋର ବିନମ୍ର ନିବେଦନ।

ସଭାପତି—**ଅନାଥ ଅନ୍ନଦାନ କେନ୍ଦ୍ର**

---

ମୁଦ୍ରାକର—ଶ୍ରୀ ଉଦୟନାଥ ପ୍ରଧାନ (ମେନେଜର)
★ ଅନନ୍ତ ଶିରୋମଣି ପ୍ରେସ୍ ★ ବସ୍‌ଷ୍ଟାଣ୍ଡ, ଆସିକା (ଗଞ୍ଜାମ)